# ବୈଜ୍ଞାନିକ ଆମେ ୧

# ମୋ ନାଁ - 'ଡାଭିନ୍‌ଚି' ନିଆଁଲଗା ଓପି

ଶାନ୍ତନୁ କୁମାର ଆଚାର୍ଯ୍ୟ



# ନିଆଁଲଗା ଓପି

ଲେଖକ
ଶାନ୍ତନୁ କୁମାର ଆଚାର୍ଯ୍ୟ



ପ୍ରକାଶକ :
ଅଗ୍ରଦୂତ
କଟକ-୨

# ନଆଁଲଗା ଓପି

ଲେଖକ :

**ଶାନ୍ତନୁ କୁମାର ଆଚାର୍ଯ୍ୟ**

ପ୍ରକାଶକ :

ଶ୍ରୀ ଶରବର ମହାନ୍ତ

**ଅଗ୍ରଦୂତ ପ୍ରକାଶନୀ**

ବାଂକା ବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୮୦

ପ୍ରଚ୍ଛଦପଟ :

ଶ୍ରୀ ଅସିତ୍ ମୁଖାର୍ଜୀ

ମୁଦ୍ରଣ :

**ସ୍ୱରାଜ ପ୍ରେସ, କଟକ-୧**

ମୂଲ୍ୟ : **ତିନିଟଙ୍କା ମାତ୍ର**

---

Paper used for Printing of this book was made available by Government of Orissa at Concessional rate.

# ନିଆଁ ଲଗା 'ଓପି'



ମୋ ନାଁ ଓପି । ଅଚିହ୍ନା ଲୋକେ ମୋତେ ଡାକନ୍ତି 'ଓପେନହାଇମର୍' । କିନ୍ତୁ ପୃଥିବୀର ଅଧିକାଂଶ ବଦରାଗୀ ଲୋକ ମତେ ଡାକନ୍ତି, "ନିଆଁ ଲଗା ଓପି" ! ତଥାପି ଜାଣିବା ଶୁଣିବା ଲୋକେ ବିଶେଷତଃ ବଡ଼ ବଡ଼ ବୈଜ୍ଞାନିକମାନେ ମୋ ନାଁ ସସମ୍ମାନେ ଲେଖନ୍ତି— "ଡକ୍ଟର ଜେ. ରବର୍ଟ ଓପେନହାଇମର୍ ।" ଭଗବାନ ଜାଣନ୍ତି, ମୋତେ ଲୋକେ କାହିଁକି ଗାଳି ଦିଅନ୍ତି, କାହିଁକି ଏତେ ଭଲ ପାଆନ୍ତି । ପ୍ରକୃତରେ ମୋର ଦୋଷ କଅଣ, ଗୁଣ କଅଣ ମୁଁ ବୁଝିପାରିଲି ନାହିଁ ଜୀବନଯାକ ।

ବଦରାଗୀ ଲୋକ ମୋତେ "ନିଆଁ ଲଗା ଓପି" କାହିଁକି ଡାକନ୍ତି ପ୍ରଥମେ ସେଇ-କଥା କହୁଛି ଶୁଣ ।

ସେଦିନ ସୋମବାର ଜୁଲାଇ ମାସର ଷୋଳ ତାରିଖ । ବର୍ଷ, ୧୯୪୫ । ସମୟ, ଭୋର୍ ୫ଟା ବାଜି ୨୯ ମିନିଟ୍ । ଆମ ଆମେରିକାରେ 'ନିଉ ମେକ୍ସିକୋ' ବୋଲି ଗୋଟାଏ ଜାଗା । ତା ଭିତରେ ଅଛି ଗୋଟାଏ ବଡ଼ ମରୁଭୂମି । ମରୁଭୂମି ଭିତରେ 'ଠ' ଆକୃତିର ପାହାଡ଼ଟିଏ । ତାକୁ କହନ୍ତି "ଜିରୋ ହିଲ୍" । ଏହି ଜିରୋ ହିଲ୍ ଉପରେ ପ୍ରାୟ ଶହେ ଫୁଟ ଉଚ୍ଚର ଇସ୍ପାତ ଦୁର୍ଗଟିଏ ତିଆରି କରିଥିଲେ ବୈଜ୍ଞାନିକମାନେ । ପ୍ରାୟ ତିନି ବର୍ଷର ଆପ୍ରାଣ ପରିଶ୍ରମର ଫଳ ସେ ଦୁର୍ଗ । ଦୂରରୁ ସେ ଦୁର୍ଗର ବେଶୀ କିଛି ଦିଶୁ ନଥାଏ । ଖାଲି ଜଣା ପଡୁଥାଏ—ଗୋଟାଏ କ'ଣ ବଡ଼ ପିତଳ ହାଣ୍ଡି ଭଳି ଜିନିଷ ଝୁଲୁଥାଏ ସେ ଦୁର୍ଗରୁ । ଲାଉଡ଼ଙ୍କ ଭଳି ଗୋଚ୍ଛାଏ ତାର ଭୂଇଁରେ ଲଟେଇ ଲଟେଇ ବହୁତ ବାଟ ପର୍ଯ୍ୟନ୍ତ ଯାଇ ଶେଷରେ ମାଡ଼ିଥାଏ ଦୁର୍ଗ ଉପରକୁ ।

ସେଇ ସ୍ଥଳରୁ ପ୍ରାୟ ପନ୍ଦର କିଲୋମିଟର ଦୂରରେ ଗୋଟିଏ ଖୁବ୍ ମଜବୁତ୍ ଘର ତୋଳା ହୋଇଥାଏ, ଅନେକ ଦିନୁ । ସେଠି ମୁଁ ବସିଥାଏ । ମୋ ସାଙ୍ଗରେ ଥାନ୍ତି ଶହ ଶହ ବଡ଼ ବଡ଼ ବୈଜ୍ଞାନିକ, ସାମରିକ ଅଫିସର, ଇଞ୍ଜିନିୟର ଓ ଅନ୍ୟମାନେ ।

ଭୋର ୫ଟା ୨୯କୁ ଆଉ ମିନିଟେ ପଇଁଚାଳିଶ ସେକେଣ୍ଡ ବାକି । ହଠାତ୍ ଜଣେ ଟୋକା ବୈଜ୍ଞାନିକ—ନାଁ ତାଙ୍କର 'ଜୋସେଫ ମ୍ୟାକ୍-କିବେନ୍', ଗୋଟାଏ ଯନ୍ତ୍ର-ମଣିଷ (ରୋବଟ୍)ର ନାକରେ ହାତ ମାରିଦେଲା । ସାଙ୍ଗେ ସାଙ୍ଗେ "ଜିରୋ ହିଲ୍"କୁ ଲମ୍ବିଥିବା ଲାଉଡ଼ଙ୍କିଆ ତାରଗୁଡ଼ାକ ଭିତରେ କଅଣ ସବୁ ଶକ୍ତି ଖେଳିଗଲା । ଆମ ଘର ଭିତରଟା ଟିକିଏ ଗୁଉଁ ଗୁଉଁ ଲାଗିଲା । ବାହାରେ କଅଣ ହଉଚି ବୋଲି ଦେଖିବାକୁ ଘରର ସମସ୍ତେ ଠିଆହୋଇ ଚାହିଁଥାନ୍ତି ପଦାକୁ । ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା—

"ମାଟି ଉପରେ ପେଟେଇ ପଡ଼ ସମସ୍ତେ ! ଆଖିରେ କଳା ଚଷମା ଦେଇଚ କି ନାହିଁ ?"

ମୋ ପାଟିରୁ ଏତିକି ବାହାରିଚି କି ନାହିଁ 'ଜିରୋ ହିଲ୍' ଉପରେ ଗୋଟିଏ ତାଣ୍ଡବ ନୃତ୍ୟ ଦେଖାଗଲା । ସତେ କି ଇସ୍ପାତ ଦୁର୍ଗସମେତ ବିଶାଳ 'ଜିରୋ ହିଲ୍' ଶିବଙ୍କ ଭଳି ତାଣ୍ଡବ ନୃତ୍ୟରେ ମାତିଗଲା । ଦୁର୍ଗ ଉପରୁ ଲମ୍ବ ଲମ୍ବ ଜଟାଭଳି ନିଆଁର ଶିଖା ଶହ ଶହ ମିଟର ଉଚ୍ଚକୁ ଛିଟିକି ପଡ଼ୁଥାଏ । ଅଗ୍ନିର କି ବିଚିତ୍ର ସେ ବର୍ଣ୍ଣ ! ଲାଲ୍, ନାରଙ୍ଗୀ,

ପାଟଳ, ସ୍ୱର୍ଣ୍ଣାଭ ଆଉ ଭୟଙ୍କର ଗାଢ଼ ସବୁଜ ବର୍ଣ୍ଣର କେତେ ଭଳି ନିଆଁର ଶିଖା ଦୂରକୁ ଯେତିକି ସୁନ୍ଦର ଦିଶୁଥାଏ ସେତିକି ବିକଟାଳ ମଧ୍ୟ ଦିଶୁଥାଏ । ତାରି ଭିତରେ ଘଟିଗଲା ଆଉ ଏକ ମାରାତ୍ମକ ଘଟଣା । ଉଠିଲା 'ବେଁ-ମୋଟର' (ବେଁ ମୋଟର ?) ଧୂଆଁ ଆଉ ଧୂଳି । ଗୋଟିଏ ଆଗ୍ନେୟଗିରିର ମୁହଁ କୋଉଠି ଅବା ଖୋଲିଗଲା । ଖରାଦିନେ ଖଣ୍ଡି ଆଭୁତ ଯେମିତି ଘାଇଁ ଘାଇଁ କରି ଧୂଳି ଉଡ଼େଇ ନିଏ, ଶୂନ୍ୟକୁ ସେମିତି ଉଠିଲା ଗୋଟାଏ କଅଣ ଉପରକୁ ଉପରକୁ । ହଜାର ହଜାର ଖଣ୍ଡି ଆଭୁତ ଏକାଠି ହୋଇ ମାଟିକୁ ତାଡ଼ିପକେଇ ଆକାଶକୁ ଟେକି ନିଇଯାଉଥାନ୍ତି ଯେମିତିକି ! ଗୋଟାଏ ମସ୍ତବଡ଼ ଛତୁ ଫୁଟିଗଲା ଶେଷରେ ଆକାଶରେ । ତା'ର ମୂଳ ଲଗିଥାଏ ମାଟିରେ ।

ଏସବୁ ଦୃଶ୍ୟ ପ୍ରଥମେ ପ୍ରଥମେ ଚୁପ୍‌ଚୁପ୍ ଚାଲିଥାଏ କିଛି ସମୟ । କିନ୍ତୁ ତା'ର ପଛକୁ ମାଡ଼ି ଆସିଲା ଶବ୍ଦ । ଘୋର ନାଦରେ ମେଦିନୀ ଫାଟିଗଲା କି ଆଉ !

ଶବ୍ଦ ପଛେ ପଛେ ଆସିଗଲା ତାତି । ସତେ କି ସୂର୍ଯ୍ୟ ନିଜେ 'ଜିରୋ ହ୍ୱିଲ୍' ଭିତରୁ ବାହାରି ପଡ଼ିଲେ । ଅସହ୍ୟ ତାପ ନିଗିଡ଼ି ପଡ଼ିଲା ଚାରିଆଡ଼କୁ । କେବଳ ତାପ ନୁହେଁ, ଗୋଟାଏ ବିଷାକ୍ତ ରଶ୍ମି ଅଦୃଶ୍ୟରେ ଖେଳି ଯାଉଥାଏ ସେତେବେଳେ । ସେ ତାପ ଓ ରଶ୍ମିରେ ଗଛବୃକ୍ଷ, ଜୀବଜନ୍ତୁ ପୋଡ଼ି ପାଉଁଶ ହୋଇଯାନ୍ତି ଆଖି ପିଛୁଡ଼ାକେ । ଜୀବ ତ ଜୀବ, ମରୁଭୂମିର ବହେ ଜାଗାରୁ ପଥର, ବାଲି, ମାଟି ତରଳି ବାଷ୍ପ ହୋଇଗଲା ।

"ନିଆଁ ଲଗା ଓପି !" ଆମ ଦଳରୁ କେହି ଜଣେ ସେତିକିବେଳେ ମୋ କାନ ପାଖରେ କହିଲା—"ତୁ ଏ କ'ଣ କଲୁ ! ତିନି ବର୍ଷ ଧରି ଏଇ କାଣ୍ଡ କରିବୁ ବୋଲି ଆମକୁ ଖଟେଉଥିଲୁ ?"

ମୁଁ ଅବାକ୍ ହୋଇ ଅନେଇ ରହିଥିଲି । ମତେ ସେଯାକେ ଜଣା ନ ଥିଲା କେଡ଼େ ବଡ଼ କାଣ୍ଡ ମୁଁ କରି ସାରିଥିଲି ସେତେବେଳକୁ ।

'ନିଆଁ ଲଗା ଓପି' ଡାକ ଶୁଣି ମୋର ଚେତା ଫେରିଲା । ସେତିକିବେଳେ ବୁଝି-ପାରିଲି—ପୃଥିବୀର ପ୍ରଥମ ପରମାଣୁ ବୋମା ପରୀକ୍ଷା କରିବା ଲୋକ ଥିଲି ମୁଁ । କିନ୍ତୁ ସେତେବେଳେ ସୁଦ୍ଧା ମୋର ଭଲ ମନ୍ଦ ଜ୍ଞାନ ଫେରି ନ ଥାଏ ପୂରାପୂରି । ପଦ୍ଧତି ଅନୁସାରେ କାମରେ ଆଗେଇଯିବା ମୋର ଜୀବନର ନୀତି ।

"ଟ୍ୟାଙ୍କ୍ ବାହାର କର !"—ଆଦେଶ ଦେଲି ମୁଁ । ଘଟଣାସ୍ଥଳକୁ ସଶରୀରରେ ଯାଇ ନିଜ ଆଖିରେ ଘଟଣାର ତଦାରଖ ନ କରିବା ପର୍ଯ୍ୟନ୍ତ ମୋ କାମ ସରି ନ ଥାଏ ସେଯାକେ । ସେଥିପାଇଁ ପୂର୍ବରୁ ବଡ଼ ବଡ଼ ସାମରିକ ଟ୍ୟାଙ୍କ୍‌ସବୁ ମୋ ନିର୍ଦ୍ଦେଶରେ ପ୍ରସ୍ତୁତ ହୋଇ ରହିଥାଏ । ଟ୍ୟାଙ୍କଗୁଡ଼ାକ ଭିତରପଟେ ମୋଟା ସୀସାର ପାତ ସବୁ ଖଞ୍ଜା ଯାଇଥାଏ । ସେ ପାତ ଭେଦି ଅଦୃଶ୍ୟ ବିଷାକ୍ତ ରଶ୍ମି ଆସିପାରୁ ନଥାଏ ଭିତରକୁ ।



ଟ୍ୟାଙ୍କ୍ ଭିତରେ ବସି ଆମେ ଆଗେଇଲୁ 'ଜରେ ହିଲ୍' ଆଡ଼କୁ । କେତେବେଳ ପରେ ଆମେ ପହଞ୍ଚିଗଲୁ ଘଟଣା ସ୍ଥଳରେ । କିନ୍ତୁ ଆମେ କଣ ଦେଖିଲୁ ? ହେ ଭଗବାନ୍, 'ଜରେ ହିଲ୍' କାହିଁ ? ଏତେ ବଡ଼ ଇସ୍ପାତ ଦୁର୍ଗ ଗଲା କୁଆଡ଼େ ? ଚାରିଆଡ଼େ ମୋଟା ସବୁଜ ରଙ୍ଗର କାଚମୁଣ୍ଡାଗୁଡ଼ାଏ ଜମିଯାଇଥାଏ । ଏ କାଚ ଆସିଲା କୁଆଡ଼ୁ ? ତେବେ କ'ଣ ମରୁଭୂମିର ବାଲି ତରଳି କାଚ ପାଲଟି ଗଲା ! ହଁ, ସେଇଆ ହୋଇ ଯାଇଥିଲା ପ୍ରକୃତରେ । ଖାଲି ସେତିକି ନୁହେଁ; ପ୍ରାୟ ଦୁଇ କିଲୋମିଟର ଆଭ୍ୟାନ୍ତରେ ଅନ୍ୟାନ୍ୟ ମରୁଭୂମିରେ କୁଶ ଗୋଟାଏ ସୁଦ୍ଧା ଦିଶୁ ନ ଥାଏ । ଜୀବଜନ୍ତୁ ଲୋପପାଇ ଯାଇଥାନ୍ତି ସେ ଜାଗାରୁ ।

ସେଦିନର ସେ ଭୟଙ୍କର ପରମାଣୁ ବୋମାର ଖବର ଦୁନିଆ ଅନେକ ଡେରିରେ ଜାଣିଲା । ମୁଁ ଯେ ମର୍ତ୍ତ୍ୟରେ ପ୍ରଥମ ପରମାଣୁ ବୋମା ଫୁଟାଇ ଦେଇପାରିଛି—ଏ ଖବର

ଶୁଣିଲିମାନେ ପୃଥିବୀରେ ଚହଳ ପଡ଼ିଗଲା । ଭୂରି ଭୂରି ପ୍ରଶଂସା ଢାଳି ହୋଇପଡ଼ିଲା ମୋ ମୁଣ୍ଡ ଉପରେ । କିନ୍ତୁ ସେଇ ଯେ ମୋ କାନ ପାଖେ କିଏ ଡାକ ଦେଇଥିଲା—"ନିଆଁ ଲଗା ଓପି"; ସେ ଡାକ ସେଦିନୁ ମୋ ଗୁଣ୍ଡିକୁ ବିଦାରି ଲାଗିଲା । ଯେଥିରୁ ଆଜି ମୋର ନିସ୍ତୃତି ନ ଥିଲା ।

( ୨ )

ଓଃ ! ପରମାଣୁ ବୋମା କି ଭୟଙ୍କର ! 'ଜବେ ହିଲ୍'ରେ ସେ ଦିନ ଯୋଉ ମାରାତ୍ମକ ଘଟଣା ଆମ ଆଖି ଆଗେ ଘଟି ଯାଇଥିଲା ସେ ତ କିଛି ନୁହେଁ । ମାତ୍ର ମାସଟିଏ ଭିତରେ ଆଉ ଗୋଟିଏ ପରମାଣୁ ବୋମା ଫୁଟିବା ଖବର ଜଗତର ଲୋକେ ଶୁଣିବେ ବୋଲି ମୁଁ ନିଜେ ମଧ୍ୟ ବିଶ୍ୱାସ କରି ନ ଥିଲି । ଏ ବୋମା ଅବିକଳ 'ଜବେ ହିଲ୍'ର ପରମାଣୁ ବୋମା ପରି; କିନ୍ତୁ ଆହୁରି ଶକ୍ତିଶାଳୀ, ଢେର୍ ମାରାତ୍ମକ ।

ସେତେବେଳେ 'ଦ୍ୱିତୀୟ ବିଶ୍ୱଯୁଦ୍ଧ' ଲାଗିଥାଏ । ଯୁଦ୍ଧରେ ଗୋଟିଏ ପକ୍ଷେ ଥାଏ ଆମ ଦେଶ ଆମେରିକା ଓ ତା ସହିତ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷ ଦେଶ । ଅନ୍ୟ ପକ୍ଷେ ଥାଏ ଜର୍ମାନୀ, ଇଟାଲୀ ଓ ଜାପାନୀ ଦେଶ । ସେତେବେଳକୁ ପ୍ରାୟ ସାତ ଆଠ ବର୍ଷ ଧରି ଘୋର ଯୁଦ୍ଧ ଚାଲିଲାଣି । ସାରା ପୃଥିବୀର ଲକ୍ଷ ଲକ୍ଷ ଲୋକ ମଲେଣି । ବହୁ ବଡ଼ ବଡ଼ ସହର ଧୂଳିସାତ୍ ହୋଇଗଲାଣି । ଜଗତର ଲୋକେ ତ୍ରାହି ତ୍ରାହି ଡାକୁଥାନ୍ତି । କିନ୍ତୁ ଯୁଦ୍ଧ ସରୁ ନଥାଏ । ବରଂ ଦିନକୁ ଦିନ ଆହୁରି ଭୟଙ୍କର ରୂପ ବାହାର କରି ବଢ଼ିବାରେ ଲାଗିଥାଏ । ଯାହା ଜଣା ପଡ଼ୁଥାଏ ଯେବୁ ମଣିଷଙ୍କୁ ନ ମାରି ମହାଯୁଦ୍ଧ ପୃଥିବୀରୁ ନ ଯିବାକୁ ମନ କରିଥାଏ ।

ସେ ମହାଯୁଦ୍ଧର କର୍ତ୍ତା ଜଣେ ମଣିଷ ବୋଲି ଲୋକେ ସେଦିନ କଥାବାର୍ତ୍ତା ହେଉଥାନ୍ତି—ତା' ନାଁ 'ହିଟ୍ଲର' । ସେ ଥିଲା ଜର୍ମାନୀ ଦେଶର ଲୋକ । କୋଠା ବାଡ଼ରେ ଚୂନାଧଉଳା କାମ କରୁଥିଲା ସେ । ଭାରି ଦେଶଭକ୍ତ ବୋଲି ଲୋକେ ଚିହ୍ନିଥିଲେ ତାକୁ । ଚୂନଧଉଳା କାମ ଛାଡ଼ି ହିନାକେତେ ସୈନ୍ୟବାହିନୀରେ ବି କାମ କରୁଥିଲା ସେ । କିନ୍ତୁ ତା'ର ଏମିତି କିଛି ଗୁଣ ଥିଲା, ଯାହା ଯୋଗୁଁ କୌଶଳରେ ସେ ତାଙ୍କ ଦେଶର ଶ୍ରେଷ୍ଠରେ ଜଣିଗଲା । ଅଳ୍ପ କେତେଟା ଦିନରେ ସେ ଜର୍ମାନୀର 'ସର୍ବୋଚ୍ଚ କର୍ତ୍ତା' ମଧ୍ୟ ବନିଗଲା ।

ତା'ପରେ ବାହାରିଲା ତା'ର ଅସଲ ରୂପ । ତା' ମୁଣ୍ଡରେ ପଶିଥାଏ ଯେ ତା' ଜାତିଭାଇ ଜର୍ମାନୀ ଦେଶର ଲୋକେ ପୃଥିବୀର ଆଉ ସବୁ ମଣିଷଙ୍କଠୁଁ ଶ୍ରେଷ୍ଠ; ତେଣୁ ଜର୍ମାନୀ ଲୋକେ



ଇଚ୍ଛା କଲେ ସାରା ପୃଥିବୀକୁ ଜୟ କରିପାରିବେ ଓ ଅନ୍ୟାନ୍ୟ ଜାତିର ଲୋକଙ୍କୁ ନିଜ ଅଧୀନରେ ରଖିପାରିବେ ।

ହିଟ୍‌ଲର୍‌ର ଭଗବାନ-ବିଶ୍ୱାସ ନଥିଲା । ସେ ଭାବୁଥିଲା, ଜଗତଟା ବୁଦ୍ଧିଆ ବଳୁଆ ମଣିଷଙ୍କ ହାତରେ ଖେଳଣାଟିଏ ଭଳି ଜିନିଷ । ତାକୁ ନେଇ ଯେମିତି ପାରି ସେମିତି ଖେଳ ଖେଳି ହେବ । ଦଳେ ବୁଦ୍ଧିମାନ୍ ଲୋକଙ୍କୁ ଏକାଠି କରି ହିଟ୍‌ଲର୍ ତା ଖେଳ ଆରମ୍ଭ କରିଦେଲା । ସେ ଖେଳରେ ତା ପଟକୁ ଇଟାଲୀ ଓ ଜାପାନ ଦେଶ ଆଉଜି ପଡ଼ିଲେ । ଇଟାଲୀର ଶାସକ 'ମୁସୋଲିନି' ଓ ଜାପାନର ସେତେବେଳକା ଶାସକ 'ଟୋଜୋ' ସେମାନେ ଥିଲେ ହିଟ୍‌ଲର୍-ଭକ୍ତଭିତର ।

ସେମାନେ ମଧ୍ୟ ନିଜ ଜାତିର ଲୋକଙ୍କୁ ଶ୍ରେଷ୍ଠ ଭାବୁଥିଲେ । ତା ଛଡ଼ା ସେ ତିନିହେଁ ଥିଲେ 'ଏକଛତ୍ରବାଦୀ' । ନିଜେ ଯେମିତି ବୁଝିବେ ଲୋକଙ୍କୁ ସେମିତି ଶାସନ

କରିବେ— ଏଇଆ ମନେ କରୁଥିଲେ ସେମାନେ । ଏକସିଙ୍ଗାଯାକ ଏକାଠି ହୋଇଗଲେ ଓ ମନେ କଲେ ଆଗ ପୃଥିବୀଟାକୁ ମାଙ୍ଗହେଇ ଦଖଲ କଲାପରେ ଯାଇ କିଏ ସବୁଠୁଁ ବଡ଼ ପଡ଼ିବ, ତା' ବିଚାର । ଏହିପରି ଆରମ୍ଭ ହେଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ।

ଏଣେ ଏପଟେ ରହିଗଲୁ ଆମେ । ଆମ ପଟେ ଯେଉଁ ଦେଶମାନେ ରହିଲେ ସେମାନେ କିଛି କମ୍ ଶକ୍ତିଶାଳୀ ନଥିଲେ । କିନ୍ତୁ ସେଠି 'ଏକାଙ୍ଗଚକ୍ରବର୍ତ୍ତୀ' ହୋଇ କେହି ନ ଥାନ୍ତି । ଲୋକଙ୍କ ଭୋଟ୍ ବଳରେ ଏପଟେ ନେତାମାନେ ନିର୍ବାଚିତ ହୁଅନ୍ତି । କିଏ ଚାରି ବର୍ଷ, କିଏ ପାଞ୍ଚ ବର୍ଷ କ୍ଷମତାରେ ରହିଲେ ତାଙ୍କ କାର୍ଯ୍ୟକାଳ ପୂରି ଯାଉଥାଏ । ତା'ପରେ ପୁଣି ନୂଆକରି ନେତା ବଛା ହୁଅନ୍ତି । ଏହାକୁ କହନ୍ତି 'ଗଣତନ୍ତ୍ର' । ଆମ ପଟ ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ନେତାମାନେ ଏକାଠି ହୋଇଥାନ୍ତି । ଏହିପରି, ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଦୁଇ ପଟର ଖବର ।

ସେତେବେଳକୁ ଯୁଦ୍ଧ କରି ଦୁଇପଟ ଥକି ଗଲେଣି । କିନ୍ତୁ ଯୁଦ୍ଧ ବନ୍ଦ ହେବ କିଣ ଓଲଟି ଶୁଭାଗଲା ହିଟ୍‌ଲର୍ ଗୋଟିଏ ନୂଆ ଫନ୍ଦି କରୁଛି । ଗୁପ୍ତ ଖବର ଚୁଟ୍‌ସିଟ୍ ହୋଇ ଉଭୟ ପକ୍ଷରୁ ବାହାରି ପଡ଼ୁଥାଏ ପଦାକୁ । କିଏ ସବୁ କଥାବାର୍ତ୍ତା ହେଲେ—'ହିଟ୍‌ଲର୍ ତା ଦେଶର ସବୁଠୁ ବଡ଼ ବଡ଼ ବୈଜ୍ଞାନିକଙ୍କୁ ଏକାଠି କରି ଗୋଟିଏ ଅଦ୍ଭୁତ ଯୋଜନା କରୁଛି । କୁଆଡ଼େ ସେ ଏମିତି ଗୋଟିଏ ମାରାତ୍ମକ ପରମାଣୁ ବୋମା ତିଆରି କରିବାକୁ ଲାଗିଲାଣି ଯାହାଠୁଁ ଆଉ ରକ୍ଷା ନାହିଁ ।' ବୈଜ୍ଞାନିକମାନେ ସେଭଳି ବୋମା ତିଆରି କୌଶଳ ଆଗରୁ କିଛି କିଛି ଜାଣିଥିଲେ । ଏ ଖବର ପାଇବା ମାତ୍ରେ ହିଟ୍‌ଲର୍ ଆଉ ମୁହୂର୍ତ୍ତେ ଡେରି ନକରି ଲଗେଇ ଦେଲାଣି ସେମାନଙ୍କୁ କାମରେ ।

ସେ ସମ୍ବାଦ ପହଞ୍ଚିବାମାତ୍ରେ ଭଲେଣି ପଡ଼ିଗଲା ଆମ ପଟେ । ଏବେ କରିବା କ'ଣ ? ଅସୁର ବସିଲାଣି ତପସ୍ୟାରେ । ଯଦି ତା' ତପସ୍ୟା ସିଦ୍ଧ ହୋଇଯାଏ ତେବେ ପାଶୁପତ କି ବ୍ରହ୍ମାସ୍ତ୍ର କଅଣ ସେ ଅସ୍ତ୍ର ପଡ଼ିଯିବ ତା' ହାତରେ କିଏ ଜାଣେ ! ଆମ ପଟ ଦଳର ନେତାମାନେ ହଡ଼ବଡ଼େଇ ଗଲେ । ଦିନ ପରେ ଦିନ ଗଡ଼ୁଥାଏ । ଗୁପ୍ତ ଖବର ପହଞ୍ଚୁଥାଏ—'ହିଟ୍‌ଲର୍ ଭାରି ଖୁସି ଦେଖାଯାଉଛି' । ବୋଧହୁଏ ତା' ଦେଶର ବୈଜ୍ଞାନିକମାନେ ବହୁତ ଆଗେଇ ଗଲେଣି ପରମାଣୁ ବୋମା ତିଆରିରେ । ଆମ ନେତାମାନଙ୍କ ଅକଲ୍

ଗୁଡ଼ୁମ୍ ! କ'ଣ କରାଯିବ, କ'ଣ କରାଯିବ ବିଚାରବିଚାରରେ ଦିନ ଗଡ଼ୁଥାଏ ଯାହା ସେତିକି ।

ବିଶ୍ୱଯୁଦ୍ଧର ମଝାମଝି ସେ ଦିନଗୁଡ଼ାକ ! —୧୯୪୨ର ଶରତ ଋତୁ ସେ । ଗଛରୁ ପତ୍ର ଝଡ଼ୁଥାଏ । ଆଉ ଦିନ କେତୁଟାରେ ଆସିଯିବ ପ୍ରଚଣ୍ଡ ଶୀତ । ବରଫ ପଡ଼ିବ । ସଂଜବେଳେ ମୁଁ ଆମ ଘରେ ବସିଥାଏ । ସେତେବେଳେ ମୁଁ ଆମ ଦେଶର ଗୋଟିଏ ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ପଦାର୍ଥବିଦ୍ୟା ଓ ଗଣିତ ଶାସ୍ତ୍ର ଏ ଦୁଇଟି ମୋର ପାଠ । କିନ୍ତୁ ମୋର ଅସଲ ପରିଚୟ ଅଲଗା ।

ସଂଜବେଳ ହେଲେ ଲୋକେ ଜମନ୍ତି ଆମ ଘରେ । ସେଠି ବିଜ୍ଞାନ କଥା ପଡ଼େ କମ୍ । ଆମର ମୂଳ ଗପସପ ହୁଏ ସାହିତ୍ୟ ବିଷୟରେ, ସଂସ୍କୃତି ବିଷୟରେ । ମୋ ଜାଣିବାରେ ମଣିଷ ସଂସାରରେ ବଞ୍ଚିଚି, କାରଣ ପ୍ରତିଦିନ ସଂଜହେଲେ ସେ ତା' ବନ୍ଧୁବାନ୍ଧବଙ୍କ ସାଙ୍ଗରେ ଏକାଠି ବସି ଗପସପ ହୁଏ । ପୁଣି କି ଗପ କରେ ? ପର-ମନ୍ଦ ପର-ଛିଦ୍ର କଥା ନୁହେଁ । ଭଗବାନ୍‌ଙ୍କ ଏ ଅପୂର୍ବ ସୃଷ୍ଟିରେ ଏତେ ଆନନ୍ଦର ମଧୁ ଅଛି ଯେ ତାକୁ ନ ଖୋଜି ପର-ଛିଦ୍ର କାହିଁକି ଖୋଜିବ ଜଣେ ! ସେ ମଧୁର ଫେଣା ହେଲା ସାହିତ୍ୟ, ଚିତ୍ରକଳା, ସଙ୍ଗୀତ, ନାଟକ—ମୋଟାମୋଟି ଯାହାକୁ ଆମେ ପଦକରେ କହୁ 'ସଂସ୍କୃତି' । ଜଣେ ବୈଜ୍ଞାନିକ ଯଦି ମଣିଷର ପ୍ରକୃତ ଉପକାର ଚାହିଁବ ତେବେ ପୃଥିବୀଯାକରେ ଯୋଉଠି ଯୋଉଠି ମଣିଷ ଯେତେ ଯାହା ସାହିତ୍ୟ ଓ କଳାର ସଂସ୍କୃତି ତିଆରି କରିଛି ତା'ର ରସ ତାକୁ ଚାଖିବାକୁ ହେବ ।

ସେଦିନ ଆମ ଘରେ ଆମ ଶତ୍ରୁପକ୍ଷ ଜର୍ମାନୀ ଦେଶର ସାହିତ୍ୟ ଓ ସଂଗୀତ ବିଷୟ ଆଲୋଚନା ହେଉଥାଏ । ଜର୍ମାନୀର ମହାକବି 'ଗେଟେ'ଙ୍କ ବିଷୟରେ ଆଲୋଚନା ଠିକ୍ ଜମି ଆସୁଥାଏ । ହଠାତ୍ ଆମ ଘରର ଘଣ୍ଟି ବାଜି ଉଠିଲା । ମୁଁ ଭାବିଲି କେହି ଜଣେ ସାଙ୍ଗ ବୋଧହୁଏ ଡେରିରେ ଆସୁଛନ୍ତି । ଖୁସିହୋଇ କହିଦେଲି—'ଆସନ୍ତୁ, ଆସନ୍ତୁ, ଭିତରକୁ ଆସନ୍ତୁ ।'

କିନ୍ତୁ ହେ ଭଗବାନ୍ ! କିଏ ସେ ଲୋକ ! ମତେ ସାଲ୍ୟୁଟ୍ ଟିଏ ଠୁକିଦେଇ କହିଲା—"ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍ଟ ମତେ ପଠେଇଛନ୍ତି । ଏହିକ୍ଷଣି ମୋ ସାଙ୍ଗରେ ଆସନ୍ତୁ ।"

ବନ୍ଧୁମାନଙ୍କୁ ବିଦାୟ ଦେଇ ଲୋକଟି ସାଙ୍ଗରେ ବାହାରିଯିବା ଛଡ଼ା ଆଉ ଗତି କାହିଁ ? ଗଲି ବାହାରି ମୁଁ ।

ସେଦିନୁ ତିନି ବର୍ଷ ପର୍ଯ୍ୟନ୍ତ ବାହାର ଦୁନିଆ ସାଥିରେ ମୋର ସବୁ ସମ୍ବନ୍ଧ କଟିଗଲା ଜାଣି । ମହା ଗୁପ୍ତରେ ରହି ମୋ କାଳ କେମିତି କଟିଲା କେଜାଣି ? ଲୁଚି ଲୁଚି ବୁଲିଲି ମୁଁ ମୋ ନିଜ ଲୋକଙ୍କୁ । ସାହିତ୍ୟ, ସଂସ୍କୃତି ଆଲୋଚନା କୁଆଡ଼େ ଗାଧେଇଗଲା । ଖାଲି ବିଜ୍ଞାନ ବିଜ୍ଞାନ ! ବୈଜ୍ଞାନିକ ବୈଜ୍ଞାନିକ ! ଆଉ ତାଙ୍କ ଛଡ଼ା ବଡ଼ ବଡ଼ ସରକାରୀ ଦପ୍ତରରେ ଗୁପ୍ତ ଆଲୋଚନାରେ ମୋ ଦିନ ଗଲା । କଅଣ ଆଉ କରନ୍ତି ଭଲା ! ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍‌ଟ ମୋ ମୁଣ୍ଡରେ ପେଗ୍ଟ ବସେଇ ଦେଲେ । ତାଙ୍କର ଆଦେଶରେ, ଯୁଦ୍ଧରେ ଆମ 'ମିତ୍ରପକ୍ଷ' ଯୋଉ ପରମାଣୁ ବୋମା ତିଆରି କରିବା ସିଦ୍ଧାନ୍ତ ଶେଷରେ ନେଇଥିଲେ ସେଇ ଯୋଜନାର ମୂଳ ଭାର ପଡ଼ିଲା ମୋ ମୁଣ୍ଡରେ ।

ମୁଁ ପୃଥିବୀର ଜଣେ ବଡ଼ ବୈଜ୍ଞାନିକ ନୁହେଁ, ସମସ୍ତେ ଜାଣନ୍ତି । କାରଣ ମୁଁ ତ କେବେ କିଛି ଉଦ୍ଭାବନ କରି ନାହିଁ । କିନ୍ତୁ ଅଜବ କଥା ! ଆମ ଦେଶର ଅନେକ ବଡ଼ ବଡ଼ ବୈଜ୍ଞାନିକ ଆସନ୍ତି ମୋ ପାଖକୁ । ସେମାନେ ମୋଠି କ'ଣ ଦେଖନ୍ତି କେଜାଣି ? ଏପରିକି ପଦାର୍ଥ-ବିଦ୍ୟାରେ ନୋବେଲ୍ ପ୍ରାଇଜ୍ ପାଇଥିବା ବୈଜ୍ଞାନିକ 'କାର୍ଲ ଆଣ୍ଡର୍ସନ୍' ଏବଂ 'ଡିରାକ୍'ଙ୍କ ଭଳି ବିଶ୍ୱବିଖ୍ୟାତ ଲୋକେ ମୋର ପରାମର୍ଶ ଲୋଡ଼ୁଥିଲେ । ତାଙ୍କୁ ପରାମର୍ଶ ଯାହା ଦେବାର କଥା ଦେଉଥାଏ—କିନ୍ତୁ ତା'ପରେ ମୁ ଭାବୁଥାଏ—ହେ ଭଗବାନ୍ ! 'ଏମାନେ ମୋଠୁଁ ପରାମର୍ଶ ନେଉଚନ୍ତି, ଅଥଚ ଏମାନଙ୍କର ଯଶର କାଣିଚାଏ ମୋ ଭାଗରେ ଦେଲ ନାହିଁ କାହିଁକି ?'

ଯେତେବେଳେ ମନେ ପଡ଼ିଯାଉଥାଏ ମୋର ପିଲା ଦିନର କଥା—ମୋର ଜନ୍ମ ନିଉୟର୍କ ସହରରେ । ମତେ ସେତେବେଳେ ମୋଟେ ସାତ ବର୍ଷ, ସେ ବର୍ଷ ମୋ ଜନ୍ମଦିନକୁ ଆମ ଘରେ ଗୋଟେ ପ୍ରଦର୍ଶନୀ ମୁଁ ଖୋଲି ଦେଇଥିଲି । ଏପ୍ରିଲ୍ ମାସ ୨୨ ତାରିଖ, ୧୯୧୧ରେ ସେ ଦିନଟିକୁ ମୁଁ ଭୁଲି ପାରିବି ନାହିଁ । ଆମ ଘରେ କେତେ ଅତିଥି ଆସି ପହଞ୍ଚିଥାନ୍ତି । ସମସ୍ତଙ୍କ ଆଗରେ ଥା'ନ୍ତି ମୋ ବାପା । ସେମାନଙ୍କୁ ସାଙ୍ଗରେ ଧରି ବାପା ପଶି ଆସିଲେ ମୋ ପ୍ରଦର୍ଶନୀ ଘର ଭିତରକୁ । ଘରେ ପଶୁ ନ ପଶୁଣୁ ଡାକ ପକେଇ କହିଲେ—

"ହେଇ ଦେଖ, ଆମ ଓପିର କୃତିତ୍ୱ । ଏସବୁ ଯେତେ ଜାତିର ଯେତେ ରଙ୍ଗର ପଥରର ନମୁନା ଦେଖୁଚ ସେଗୁଡ଼ିକ ସବୁ ଓପି ନିଜେ ନିଜେ ସଂଗ୍ରହ କରିଚି । କିଛି କିଣି

ଆଣିବା ଜିନିଷ ନୁହେଁ ଏସବୁ । ଭୂତତ୍ତ୍ୱ-ବହିରୁ ଚିତ୍ର ଦେଖି ଜାଗା ଜାଗାକୁ ବୁଲି ଯାଇ ଯୋଗାଡ଼ କରିଚି ଯେ ଏଗୁଡ଼ିକ । ହେଇଟି ଦେଖ, ବହୁମୂଲ୍ୟ ଧାତୁର ପଥରସବୁ ଏପଟେ ରଖା ହୋଇଛି । ତା' ଭିତରେ ଅଛି ଜାତିଏ ଭାରି ଦୁର୍ମୂଲ୍ୟ ଧାତୁପଥର । ସେଗୁଡ଼ାକ ଅନ୍ଧାରରେ ବି ଜକ୍ ଜକ୍ କରେ । ଓପି କହୁଚି, କୁଆଡ଼େ ସେଥିରୁ ଭାରି ବିଷାକ୍ତ ରଶ୍ମି ବାହାରୁଚି । ଟିକିଏ ସାବଧାନରେ ରହ ସମସ୍ତେ ସେ ପଥରଠୁଁ ।"

ପ୍ରକୃତରେ ପିଲାଦିନେ ମୁଁ ଏଭଳି ଧାତୁ-ପଥର ସଂଗ୍ରହ କରିଥିଲି, ଯୋଉଥିରୁ ପରମାଣୁ ବୋମା ତିଆରି ହେଲା ଶେଷରେ । ସତେ କି ଜନ୍ମରୁ ଏ ପରମାଣୁ ବୋମା ଭୂତ ଗୋଡ଼େଇଥିଲା ମତେ ।

ସେଦିନର ପ୍ରଦର୍ଶନୀରେ ଖାଲି ଭୂତାତ୍ତ୍ୱିକ ପଥରଗୁଡ଼ାଏ ମୁଁ ଲୋକଙ୍କୁ ଦେଖାଇ ନ ଥିଲି । ତା' ପାଖେ ପାଖେ ମୁଁ ରଖିଥାଏ ମୋ ହାତଅଙ୍କା ବହୁତଗୁଡ଼ାଏ ରଙ୍ଗ ବେରଙ୍ଗ ଛବି । ତା ପାଖକୁ ଥାଏ ମୋ 'ପିଆନୋ' ବାଦ୍ୟ ଯନ୍ତ୍ରଟି । ପିଲାଦିନୁ ଛବି ଆଙ୍କିବା ଓ ଗୀତ ବୋଲିବା ମୋର ସବୁଠୁଁ ବଡ଼ ସଉକ୍ । ଏବେ ବି ସେଇ ସଉକ ଯୋଗୁଁ ଲୋକେ ମତେ ବେଶୀ ଚିହ୍ନନ୍ତି, ବେଶୀ ଭଲ ପାଆନ୍ତି । ଏସବୁ ଉପରେ ମୋର ଆଉ ଗୋଟିଏ ଝୁଙ୍କି ହେଲା—ବିଦେଶୀ ଭାଷା ପଢ଼ିବା ଓ କହିବା । ତୁମେ ଶୁଣିଲେ ବିଶ୍ୱାସ କରିବ କି ନାହିଁ କେଜାଣି—ମତେ ସେତେବେଳେ ସତର ବର୍ଷ । ମୁଁ ବାପାଙ୍କ ସାଥୀରେ ପ୍ରାୟ ବର୍ଷେ ଖଣ୍ଡେ ୟୁରୋପ ବୁଲି ଯାଇଥିଲି । ଆମେ ଯିଏ ସବୁ ଆମେରିକାରେ ରହୁ ତାଙ୍କ ପାଇଁ ୟୁରୋପ ହେଲା ମାମୁଁଘର ଭଳି । କାରଣ ହେଇଟି ଅଛି ଆମ 'ମାତୃଭାଷା' ଓ 'ସଂସ୍କୃତି'ର ଭିଟାମାଟି । ଯିଏ ଯେଉଁଠି ଥାଉ ପଛେ ଆମେ ନିଶ୍ଚେ ଯିବୁ ୟୁରୋପର 'ରୋମ୍' ସହର ଦେଖିବାକୁ ବା 'ଗ୍ରୀସ୍' ଦେଶ ବୁଲି ଦେଖିବାକୁ । ରୋମାନ୍ ଓ ତାଠୁଁ ପୁରୁଣା ଗ୍ରୀକ୍ ସଭ୍ୟତାର ସନ୍ତାନ ଆମେସବୁ । ହଁ, ସେଥର ୟୁରୋପ ବୁଲିବା ଭିତରେ ମୁଁ ଫ୍ରାନ୍ସ, ସ୍ପେନ୍, ଇଟାଲି, ଜର୍ମାନୀ ଓ ଗ୍ରୀସ୍ ବୁଲି ଦେଇ ଆସିଲି । ଫେରିଲାବେଳକୁ ସେସବୁ ଦେଶର ଭାଷାରେ ମୁଁ କଥାବାର୍ତ୍ତା କରିପାରୁଥିଲି ।

ମୋର ଭାଷା-ପ୍ରୀତି ଯୋଗୁଁ ମୁଁ ନିଜେ ଭାବୁଥିଲି ଯେ ପ୍ରାଚୀନ ଭାଷା, ସଂସ୍କୃତରେ ମୁଁ ଜଣେ ପଣ୍ଡିତ ହୁଅନ୍ତି କି ! କିନ୍ତୁ ଭାଗ୍ୟ ମତେ ମୁହେଁଇଦେଲା ବିଜ୍ଞାନ ଆଡ଼େ । ମୋ ପିଲାଦିନୁ ବାପାଙ୍କ ଇଚ୍ଛା ଥାଏ ମୁଁ କେମିତି ଜଣେ ବଡ଼ ବୈଜ୍ଞାନିକ ହୁଏ ! ମୋର ମନ ବି କିଛି

କମ୍ ଗ୍ରଲୁ ନ ଥାଏ ସେ ଦିଗରେ । କାରଣ ମାତ୍ର ବାର ବର୍ଷ ବୟସବେଳକୁ ମୁଁ ରସାୟନ ବିଦ୍ୟାରେ ଏତେ ଧୂରନ୍ଧର ହୋଇଯାଇଥାଏ ଯେ ବାପା ମୋ ପାଇଁ ଜଣେ 'ଗୃହଶିକ୍ଷକ' ରଖିଦେଲେ । ସେ ମୋତେ ଖାଲି ରସାୟନ ପଢ଼ାନ୍ତି । ମାତ୍ର ଛ' ମାସ ଭିତରେ ମୁଁ ସେ ବିଦ୍ୟାର ବହୁ ଜଟିଳ ତତ୍ତ୍ୱ ଜାଣିପାରି-ଥିଲି । ସେଥିପାଇଁ ୧୯ ବର୍ଷ ବୟସରେ ମୁଁ ଯେତେବେଳେ 'ହାର୍ଭାର୍ଡ଼ ବିଶ୍ୱ-ବିଦ୍ୟାଳୟ'ରେ ନାଁ ଲେଖାଇଲି । ସେଠୁ ମୋଟେ ତିନ ବର୍ଷରେ ମୁଁ ଚାରି ବର୍ଷର ପାଠ ଶେଷ କରିଦେଲି । ଢେର ନମ୍ବର ରଖି ଯୋଗ୍ୟତାର ସହିତ ମୁଁ ପାଶ୍ କଲି ।



ମୋର ଉଚ୍ଚତର ଶିକ୍ଷା ସେଇଠୁ ଆରମ୍ଭ ହେଲା । ପୃଥିବୀର ଅତି ନାମ-ଜାଦା ପ୍ରଫେସର 'ଲର୍ଡ଼ ରଥରଫୋର୍ଡ଼'ଙ୍କ ପାଖେ ମୁଁ ଆସି ପଡ଼ିଲି—ଇଂଲଣ୍ଡର 'କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ'ରେ । ଏ ରଥରଫୋର୍ଡ଼ ଥିଲେ ପରମାଣୁବିଜ୍ଞାନର ମୂଳ ଗୁରୁଙ୍କ ଭିତରୁ ଜଣେ । ପରମାଣୁ ଭୂତ କି ଦେବତା ସେ କେଜାଣି, ମତେ ଏମିତି ଏମିତି ବାଟ କଢ଼ାଉଥାଏ ଆଗକୁ ଆଗକୁ ।

ଇଂଲଣ୍ଡରୁ ପଢ଼ା ଶେଷ କରି ଗଲି ଶେଷରେ ଜର୍ମାନୀକୁ । ସେତେବେଳକୁ ଜର୍ମାନୀ ଥିଲା ବୈଜ୍ଞାନିକଙ୍କ ସ୍ୱର୍ଗ । କାରଣ ସେ କାଳରେ ସବୁତକ ବଡ଼ ବଡ଼ ବୈଜ୍ଞାନିକ ଉଦ୍ଭାବନ ବାହାରୁଥିଲା ଜର୍ମାନୀରୁ । ସେଇଥିପାଇଁ ତ ଦୁଷ୍ଟ ହିଟ୍‌ଲର୍‌ର ଗର୍ବ ଏତେ

ବଢ଼ିଯାଇଥିଲା । ଭାବୁଥିଲା ସେ ତା’ ଦେଶର ସବୁ ମଣିଷ ବୈଜ୍ଞାନିକ । ଯେହେତୁ ବୈଜ୍ଞାନିକ-ମାନେ ବୁଦ୍ଧିଆ ଲୋକ, ତେଣୁ ସାରା ପୃଥିବୀରେ ଜର୍ମାନୀ ଜାତି ହିଁ ବୁଦ୍ଧିମାନ୍ ଓ ଶ୍ରେଷ୍ଠ । ହିଟ୍‌ଲର୍‌ର ସେ ଗର୍ବକୁ ପ୍ରକୃତରେ ମାନିଯିବାକୁ ପଡ଼ୁଥିଲା । କିନ୍ତୁ ଗର୍ବୀ ଲୋକେ ନିଜ ବଂଶକୁ ନିଜେ ମାରିବା କଥା ପୁରାଣରେ ଅଛି । ସେଇଭଳି ହିଟ୍‌ଲର୍ ନିଜ ବଂଶକୁ ନିଜେ କେମିତି ଧ୍ୱଂସ କଲା—ଶୁଣ, କହୁଚି ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ମୂଳରୁ ମୂଳରୁ ମହାପ୍ରତାପୀ ହିଟ୍‌ଲର୍ ଏଭଳି ପରାକ୍ରମ ଦେଖାଇଲା ଯେ ଆମ ମିତ୍ର ପକ୍ଷ ହାହା ହାହା ଡାକ ଦେଲା । ହିଟ୍‌ଲର୍ ସାଥିରେ ଇଟାଲିର ଶାସକ ମୁସୋଲିନି ଓ ଜାପାନୀ ଦେଶର ସମ୍ରାଟ୍ ଟୋଜୋ ଏକାଠି ହୋଇ ପଶ୍ଚିମ ଓ ପୂର୍ବ ଦୁଇ ପାଖରୁ ଆମ ମିତ୍ର ପକ୍ଷ ଦେଶଗୁଡ଼ିକୁ ଆକ୍ରମଣ କରିଦେଲେ । ଜର୍ମାନୀର ବୈଜ୍ଞାନିକ-ମାନେ ନୂଆ ନୂଆ ପ୍ରକାର ଅସ୍ତ୍ରଶସ୍ତ୍ର ପ୍ରତିଦିନ ଉଦ୍ଭାବନ କରି ଲାଗିଥାନ୍ତି । ସଙ୍ଗେ ସଙ୍ଗେ ସେଗୁଡ଼ାକ ଲାଗିଯାଉଥାଏ ଯୁଦ୍ଧରେ । ସେତେବେଳେ କେତେ ଯେ ନୂଆ ଧରଣର ଉଡ଼ାଜାହାଜ, ବୁଡ଼ାଜାହାଜ, ବନ୍ଧୁକ, ତୋପ, ମେସିନ୍‌ଗନ୍ ସେଇ ଜର୍ମାନୀରୁ ବାହାରୁଥାଏ ତା’ର କଳନା ନାହିଁ । ଗୁଳକବିହୀନ ପ୍ରକାରେ ଉଡ଼ାଜାହାଜ ସେତେବେଳେ ବାହାର କରିଥାଏ ଜର୍ମାନୀ । ତାକୁ କୌଣସି ପାଇଲଟ୍ ଚଳାଉ ନ ଥାଏ । କଳ-ଖେଳନାର ଗୁଡ଼ି ମୋଡ଼ିଦେଲେ ଯେମିତି ଯେ ତା’ ମନକୁ ଘୂରେ, ସେମିତି ଉଡ଼ିଆସେ ଆକାଶରେ ସେ ଉଡ଼ାଜାହାଜ । ସେଥିରେ ବୋମା ଭର୍ତ୍ତି ହୋଇଥାଏ । ଆମ ମିତ୍ର ପକ୍ଷର ବଡ଼ ବଡ଼ ସହର, ଘାଟି ଜାଗା ଯେଉଁଠି, ସେଠି ଉଡ଼ାଜାହାଜରୁ ଖସିଁ ଗଲି ପଡ଼ୁଥାଏ ବୋମାଗୁଡ଼ାକ । ତା’ ପରେ ସେ ଉଡ଼ାଜାହାଜ ମନକୁ ମନ ଫେରିଯାଉଥାଏ ଯେଉଁଠୁ ବାହାରିଥାଏ ସେଠିକି ।

ଏଭଳି ଭୟଙ୍କର କାଣ୍ଡ ଦେଖି କିଏ ବା ନ ଭାବନ୍ତା ଯୁଦ୍ଧରେ ହିଟ୍‌ଲର୍‌ର ହିଁ ଜିତାପଟ । ଆମ ମିତ୍ର ପକ୍ଷରେ ଲୋକେ କେହି କେହି କଥାବାର୍ତ୍ତା ଆରମ୍ଭ କରିଦେଲେ—“ଆରେ ଦେଖ ! ଭୋଟ୍‌ରେ ନେତା ବାଛି ଯୋଉ ଗଣତନ୍ତ୍ର ସରକାର ଆମେ କରିଚେ ସେ ସରକାର କେମିତି ମାଇଚିଆ । ମାଇଚିଆ ସରକାରଗୁଡ଼ାକ କେମିତି ହିଟ୍‌ଲର୍ ମୁସୋଲିନି ଭଳିଆ ‘ଏକାଙ୍ଗଚକ୍ରବର୍ତ୍ତୀ’ଙ୍କ ସାମନାରେ ଠିଆ ହେବେ ? ଛିଡ଼, ଛିଡ଼ ! ଜଣେ ଜଣେ ଦଣ୍ଡା ସାମରିକ ଅଫିସରଙ୍କୁ ବାଛ । ତାଙ୍କର ହାତରେ ଦେଶକୁ ଦେଇଦିଅ । ଦେଖିବ କେମିତି ମିତ୍ର ପକ୍ଷ ନ ଜିତିବେ ଏ ଯୁଦ୍ଧରେ !”

କିନ୍ତୁ ଲୋକଙ୍କ ମତରେ ଗଢ଼ାଯାଇଥିବା ସରକାର ପ୍ରକୃତରେ କେତେ ଟାଣୁଆ ସେ କଥା ଶୀଘ୍ର ବୁଝିବା ବେଳ ଆସିଯାଉଥାଏ ପୃଥିବୀକୁ ।

ମୋ ଭାଗ୍ୟ ଭଲ, ଯୁଦ୍ଧ ଆରମ୍ଭ ପୂର୍ବରୁ ମୋର ଜର୍ମାନୀରେ ପାଠ ପଢ଼ା ସରି-ଯାଇଥାଏ । ଜଣେ ବିଖ୍ୟାତ ବୈଜ୍ଞାନିକ, ତାଙ୍କ ନାଁ 'ମ୍ୟାକ୍‌ସ ବର୍ଣ୍ଣ', ତାଙ୍କଠାରୁ ମୁଁ ପଦାର୍ଥବିଦ୍ୟା ଓ ଗଣିତର ଅସଲ ମନ୍ତ୍ର ଶିକ୍ଷାକରି ଫେରି ଆସିଥାଏ ନିଜ ଦେଶକୁ । ସେ ମନ୍ତ୍ରରେ ହିଁ ମୁଁ ଆସୃଷ୍ଟି କଲି ଶେଷରେ ପରମାଣୁ ବୋମାର ଭୂତକୁ । ହିଟ୍‌ଲର୍ କୁଆଡ଼ୁ ଜାଣନ୍ତା ଯେ ଜ୍ଞାନ କାହାରି ବାପର ସମ୍ପତ୍ତି ନୁହେଁ । ସେ ସମ୍ପତ୍ତିରେ ଅଧିକାର ସମସ୍ତଙ୍କର—ସାରି ମଣିଷ ଜାତିର ।

ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍‌ଟଙ୍କ ସହିତ କଥାବାର୍ତ୍ତା ବେଳେ ସେ ମତେ ଅତି ଗୋପନରେ ଗୋଟିଏ କଥା କହିଥିଲେ—

"ଦେଖ ଓପି ! ଏଇ ମୁହୂର୍ତ୍ତରୁ ଦଉଡ଼ ଆରମ୍ଭ ହେଲା । ମୁଁ ଖବର ପାଇଛି— ହିଟ୍‌ଲର୍‌ର ବୈଜ୍ଞାନିକମାନେ ପରମାଣୁ ବୋମା ତିଆରିରେ ଲାଗିପଡ଼ିଲେଣି । ଏ ଗୋଟିଏ ଭୟଙ୍କର ମାରଣାସ୍ତ୍ର । ଯଦି ହିଟ୍‌ଲର୍ ହାତରେ ଏ ବୋମା ଆଗତୁରା ପଡ଼ିଯିବ, ତେବେ ପୃଥିବୀରୁ ମଣିଷର ଟେକ ବୁଡ଼ିଯିବ । ମଣିଷର ଟେକ ସ୍ୱାଧୀନତା । ଯଦି ସ୍ୱାଧୀନତାକୁ ବଞ୍ଚାଇ ରଖିବାକୁ ଚାହିଁ, ତେବେ ଏ ଦଉଡ଼ରେ ଜିତିବାକୁ ହେବ ତୁମକୁ । ହିଟ୍‌ଲର୍‌କୁ ବଳି ଯିବାକୁ ହେଲେ ପରମାଣୁ ବୋମା ସବୁରି ଆଗରୁ ଆମେ ହିଁ ଫୁଟେଇବା । ମୋର ବିଶ୍ୱାସ, ତମେ ହିଁ ପାରିବ । ମଣିଷର ଟେକ ତମେ ହିଁ ରଖିବ ।"

ଏତିକ କହିସାରି ପ୍ରେସିଡେଣ୍ଟ୍ ତାଙ୍କ ପକେଟ୍‌ରୁ ରୁମାଲ୍ ଖଣ୍ଡିଏ କାଢ଼ି ମୁହଁ ଆଖି ପୋଛିନେଲେ ଥରେ । ତାଙ୍କ ଆଖିରେ ଲୁହ ତଥାପି ଟଳମଳ ହଉଥାଏ । ବିଜୁଳି ଆଲୁଅରେ ତାଙ୍କ ମୁହ ଜଳଜଳଗିର ଦିଶୁଥାଏ ।

"ପାରିବ ?"—ହଠାତ୍ ପଚାରିଦେଲେ ସେ ମତେ । ତାଙ୍କ ମୁହଁକୁ ଚାହିଁଦେଲି ମୁଁ । ଚମକି ପଡ଼ିଲି । ମତେ ଯେମିତି ଜଣାଗଲା ପିଲାଦିନେ ମୋ ବାପା ଯେମିତି ଥରେ ଥରେ ମୋ ମୁହଁକୁ ଚାହିଁ ରହି କାହିଁକି କେଜାଣି ହସି ଦିଅନ୍ତି କି କାନ୍ଦି ପକାନ୍ତି, ପ୍ରେସିଡେଣ୍ଟ୍ ସେମିତି ଚାହିଁଥାନ୍ତି ମତେ ।

ମୁଁ ଉଠି ଠିଆ ହୋଇପଡ଼ିଲି ।

ହିଟ୍‌ଲର୍ ସଙ୍ଗେ ମୋର ଦଉଡ଼ ସେଇଠୁ ଆରମ୍ଭ ହୋଇଗଲା ।

"ଦେଖ !" ମୁଁ ତାଙ୍କ ଆଗରୁ ଚାଲିଆସିବା ପୂର୍ବରୁ ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍‌ଟ ଆଉ ଥରେ ଡାକି ସତର୍କ କରିଦେଲେ ମତେ, "ଏ ବିଷୟ ଅତି ଗୁପ୍ତ ! ବୁଝିପାରୁଛ ତ ?"

ସେଇଦିନଠୁ ତିନିବର୍ଷ ପର୍ଯ୍ୟନ୍ତ ଦୁନିଆର କାହାରିକୁ ଜଣା ନ ଥିଲା ଯେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଅସଲରେ ଥିଲା ପରମାଣୁ ବୋମା ତିଆରି ଲାଗି ଗୋଟିଏ ପ୍ରାଣମୂର୍ଚ୍ଛା ପ୍ରତିଯୋଗିତା । ସେତେବେଳକୁ ବାଜି ପଡ଼ି ସାରିଥିଲା । ଯେଉଁ ପକ୍ଷ ଆଗ ସେ ବୋମା ତିଆରି କରିଦେବ ସେଇ ନେବ ଜିତାପଟ ।

ପରମାଣୁ ବୋମା ତିଆରି କୁଆଡ଼େ ଭାରି ସହଜ ବୋଲି ଆଜକାଲିକା ବୈଜ୍ଞାନିକମାନେ କହୁଛନ୍ତି । ଏବେ ଅଳ୍ପଦିନ ତଳେ ମୁଁ ସ୍ୱର୍ଗରେ ଥାଇ ଶୁଣିବାକୁ ପାଇଲି, କୁଆଡ଼େ ଆମେରିକାର ( ଯୋଉ ଦେଶରେ ମୁଁ ଜନ୍ମ ହୋଇଥିଲି ) ଜଣେ କଲେଜ ପିଲା ସମସ୍ତଙ୍କୁ ଡରେଇ ଦେଇଛି ଯେ ସେ ଇଚ୍ଛା କଲେ ଗୋଟେ ପରମାଣୁ ବୋମା ତିଆରି କରିଦେଇପାରିବ । ସେ କଥା ସତ ହୋଇପାରେ । କିନ୍ତୁ ତିରିଶ ପଇଁତିରିଶ ବର୍ଷ ତଳେ ଏ ବୋମା କି ଜିନିଷ, ଏ କଥା ପୃଥିବୀର ସବୁଠୁଁ ବଡ଼ ବୈଜ୍ଞାନିକ 'ଆଇନ୍‌ଷ୍ଟାଇନ୍' ଙ୍କୁ ବି ଜଣା ନ ଥିଲା । ତଥାପି ସେଇ ଆଇନ୍‌ଷ୍ଟାଇନ୍‌ଙ୍କ ଗଣିତ ଶାସ୍ତ୍ରରୁ ଜନ୍ମ ହୋଇଥିଲା ପରମାଣୁ ବୋମା ।

ଏଡ଼େ ଜଟିଳ ସେ ଗଣିତ ଯେ ପୃଥିବୀର ଚାରି ଛଅ ଜଣ ବଡ଼ ବଡ଼ ବୈଜ୍ଞାନିକ ମୋଟେ ତା' ମର୍ମ ବୁଝୁଥିଲେ । ପୁଣି ସେମାନଙ୍କ ଭିତରୁ ଅଧିକାଂଶ ହେଲେ ହିଟ୍‌ଲରର ଜର୍ମାନୀ ଲୋକ । ସେଇମାନଙ୍କୁ ଘେନି ହିଟ୍‌ଲର୍ ମାଡ଼ି ଚାଲି ଯାଉଥାଏ ଆଗକୁ ଆଗକୁ । ଗୁପ୍ତ ସମ୍ବାଦରୁ ଜଣାପଡ଼ୁଥାଏ, ଜର୍ମାନୀରେ ପରମାଣୁ ବୋମା ତିଆରି ଆଉ ବେଶୀ ଡେରି ଲାଗିବ ନାହିଁ । ସେ କଥା ଶୁଣିଲାମାତ୍ରେ ମୋ ମୁହଁ କଳାକାଠ ପଡ଼ିଯାଉଥାଏ । ଆମ କାରଖାନାର ବୈଜ୍ଞାନିକମାନଙ୍କୁ ମୁଁ ପ୍ରତିଦିନ ମିଟିଙ୍ଗ୍‌କୁ ଡାକି ପଚାରୁଥାଏ—"ଆଉ କେତେ ଦିନ ?"

ସେମାନଙ୍କ ଉତ୍ତର ଶୁଣିଲେ ମୋ ଦେହରୁ କଳା ପାଣି ନିଗିଡ଼ି ପଡ଼ୁଥାଏ । କିନ୍ତୁ ସବା ଶେଷରେ ମୁଁ ସମସ୍ତଙ୍କୁ ଆଶ୍ୱାସନା ଦେଇ ପଚାରୁଥାଏ—"ଜଣେ ମଣିଷର ଇଚ୍ଛା-ଶକ୍ତିର ବଳ ବେଶୀ ନା କୋଟି କୋଟି ଲୋକଙ୍କ ମିଳିତ ଇଚ୍ଛା-ଶକ୍ତିର ବଳ ବେଶୀ ?"

ସେମାନେ ସେଇ ଗୋଟିଏ ଉତ୍ତର ଦେଉଥା'ନ୍ତି—

"ଗଣତନ୍ତ୍ରର ଜୟ ହେବ !"

ଏହିପରି ଦିନ ଗୋଟିଏ ଗୋଟିଏ ଆଗଉଥାଏ ।

ଇତି ମଧ୍ୟରେ ଆମ ଦେଶର ନିଉମେକ୍ସିକୋ ମରୁଭୂମି ଅଞ୍ଚଳରେ 'ଆଲ୍‌ମୋସ୍' ବୋଲି ଏକଣା ଜାଗାଟିଏ ବଛା ସରିଥାଏ । ଜଙ୍ଗେ ସ୍କୁଲ୍ ସେଠୁ କେତେଗୁଡ଼ାଏ ଦୂର । ସେଠି ପରମାଣୁ ବୋମାର କାରଖାନା ତିଆରି ଚାଲିଥାଏ । କେଡ଼େ ବଡ଼ ସେ କାରଖାନା ମୁଁ ତ ସହଜେ ବୁଝେଇ ପାରିବି ନାହିଁ । ତେବେ ସେଠି ପହିଲି ଦଫାରେ ପଚିସ୍ତରି ହଜାର ଲୋକ କାମ କରୁଥା'ନ୍ତି । ଟଙ୍କା ଖର୍ଚ୍ଚ ହେବାକୁ ଥାଏ ସେ କାଳରେ ଦୁଇଶହ କୋଟି ଡଲାର୍ ।

ଏ ତ ଗଲା ପହିଲି ଦଫା କାମ । ତା' ପଛକୁ ଆହୁରି ସେତିକି ଲୋକ ସେତିକି ଟଙ୍କା ଖର୍ଚ୍ଚରେ ଆରମ୍ଭ ହୋଇଗଲା ଆଉ ଗୋଟିଏ କାରଖାନା । ଏ ଦୁଇ କାରଖାନା ମିଶି ଲାଗି ପଡ଼ିଲେ କାମରେ । ଧାଇଁ ଧାଇଁ କାମ ଲାଗିଗଲା । ରାତି ଦିନ ଚବିଶ ଘଣ୍ଟା ପାଳି କରି ଖଟି ଚାଲିଲେ ଲୋକେ । କିନ୍ତୁ ଗୋଟିଏ କଥା ! କେତେ ଲୋକ ସେ କାରଖାନା ଦୁଇଟାରେ କାମ କରୁ ନ ଥା'ନ୍ତୁ ! ହେଲେ ମୋ ଛଡ଼ା ଅନ୍ୟ କେହି ସେ ଗୁପ୍ତ କାମର ଅସଲ ଟେର୍ ପାଇ ନ ଥାନ୍ତି । ଏତେ ଲୋକଙ୍କ ଭିତରେ ଏଡ଼େ ବଡ଼ ଗୁପ୍ତ କଥା ଏତେ ଦିନ ପେଟରେ ରଖିବା, ଓହୋ କି କଷ୍ଟକର ! କିନ୍ତୁ ହେଇଥା ତ କରିଥିଲି ବୋଲି ଆମ ମିତ୍ରପକ୍ଷ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜିତିଲେ । ତଥାପି ହେଇଥିଯୋଗୁଁ ମତେ ସବାଶେଷରେ ଉପଯୁକ୍ତ ପୁରସ୍କାର ମିଳିଲା—"ନିଆଁ ଲଗା ଓପି !" ଧନ୍ୟ କହିବ ମୋ ଭାଗ୍ୟକୁ ସିନା !

ଆମ ସମୟରେ ପରମାଣୁ ବୋମା ତିଆରି କରିବା ପ୍ରକୃତରେ ଭାରି କଷ୍ଟ ଥିଲା । ଖାଲି ଟଙ୍କା ଆଉ ମଣିଷଙ୍କୁ ନେଇ ତ ସବୁ କାମ ହୁଏ ନାହିଁ । ମୂଳ ଜିନିଷ ହେଲା 'ସାମଗ୍ରୀ' । ପରମାଣୁ କିଛି ଡାଲି-ଫୋଟକା ନୁହେଁ କି ଗୁଳିଗୁଳା ନୁହେଁ । ଏଥିରେ ବାରୁଦ ଚଳେ

ନାହିଁ; ତଲେ, ଗୋଟେ ପ୍ରକାର ବହୁମୂଲ୍ୟ ଧାତୁ । ଏ ଧାତୁ ପୁଣି ଖୁବ୍ ଦୁଷ୍ପ୍ରାପ୍ୟ । ଏ ଧାତୁ ନାଁ 'ୟୁରେନିୟମ୍' । ବୈଜ୍ଞାନିକମାନେ ତାକୁ ଦୁଇ ଶହ ପଇଁତିରିଶ ନମ୍ବର ୟୁରେନିୟମ୍ ବା U-235 ବୋଲି କହନ୍ତି । ଏ ପୁଣି ମିଳେ ଦୁଇ ଶହ ଅଠତିରିଶ ନମ୍ବର ୟୁରେନିୟମ୍



U-238 ରୁ । U-238 ମିଳେ ଖଣିଜ ପଥରରୁ । ପର୍ବତ ପ୍ରମାଣେ ଖଣିଜ ପଥରରୁ ମିଳେ ମାତ୍ର ଚିମୁଟାଏ U-238 । ଏଇଥିରୁ ବୁଝି ଥିବ କି କଷ୍ଟ ଏ ଧାତୁକୁ ଖୋଜିପାଇବା । ପୁଣି ଏଥିରୁ U-235 କାଢିବା କାଠିକର ପାଠ । ମସ୍ତବଡ଼ ପାଲଗଦାରେ ଛୁଞ୍ଚିଟାଏ ଗଳିପଡ଼ିଲେ ତାକୁ ଖୋଜି ପାଇବା ଯେତେ କଷ୍ଟ ନୁହେଁ, ତାଠୁ ଆହୁରି କଷ୍ଟ କାମ ଏ !

U-235 ଗୋଟିଏ ଅତି ବିଷାକ୍ତ ଜିନିଷ । ତା' ଦେହରୁ ଯୋଉ ରଶ୍ମି ବାହାରେ ସେଥିରେ ମଣିଷ ମରିଯିବ । ତେଣୁ U-235କୁ ହାତରେ ଛୁଇଁବାର ସୁ ନାହିଁ । ତା' ଛଡ଼ା ଏ ରଶ୍ମିର ଏତେ ଶକ୍ତି ଯେ ମୋଟା ଲୁହା ପାତ ଭେଦିଯିବ । ସେଇଥିପାଇଁ ତ ବୋମା ଫୁଟିବା ପରେ ଆମେ ଯୋଉ ଟ୍ୟାଙ୍କରେ 'ଜିବ୍ରୋ ହିଲ୍' ପାଖକୁ ଗଲୁ ତା' ଭିତରପଟେ ମୋଟା ସୀସା ପାତର ଅସ୍ତର ଦିଆହୋଇଥିଲା । U-235 ରୁ ବାହାରୁଥିବା ବିଷାକ୍ତ ରଶ୍ମି ମୋଟା ସୀସା ପରଦା ଭେଦି ପାରେ ନାହିଁ । ତେଣୁ ସେଇ ପରଦା ଆଢ଼ୁଆଳରେ ରିଆହୋଇ ଯନ୍ତ୍ର ସାହାଯ୍ୟରେ U-235 ସାଙ୍ଗରେ କାରବାର କରନ୍ତି ଜାଣିବା ଶୁଣିବା

ବୈଜ୍ଞାନିକମାନେ । ସେଇ ଯନ୍ତ୍ରରେ ମଣିଷର ହାତ ଭଳି ଧାତୁ ତିଆରି ହାତ ଖଞ୍ଜା ହୋଇଥାଏ । ଆମେ ଆମ ହାତରେ ଆଙ୍ଗୁଠି ସାହାଯ୍ୟରେ ଯେମିତି ଜିନିଷପତ୍ର ଧରୁ, ଉଠାଉ, ଯାନ୍ତ୍ରିକ ହାତ ସେମିତି କାମ ଦାମ କରିପାରେ ।

ଏମିତି ଏମିତି ସବୁ ତ ହେଲା । ସବୁ ନ ମିଳିବା ଜିନିଷ ମିଳିଗଲା । ମଣିଷ ଯେତେ ବିକଳ ହୋଇ କାମ କଲେ ହବ ବା କଅଣ ! ଠିକଣା ସମୟକୁ ଠିକଣା ବୁଦ୍ଧି, ଜ୍ଞାନ ନ ମିଳିଲେ କୋଉ ନୂଆ କାମ ଆଗେଇବ ? ଆମ ଦେଶରେ ପୃଥିବୀର ବହୁ ବଡ଼ ବଡ଼ ବୈଜ୍ଞାନିକ ଥିଲେ ନିଶ୍ଚେ । କିନ୍ତୁ ପରମାଣୁ ତଥ୍ୟ ତ ସେତେବେଳେ ବେଶୀ ଜଣା ନ ଥାଏ କାହାରିକୁ । ସେ ପୁଣି ଅତି ଗୁପ୍ତ ତଥ୍ୟ । ଯୁଦ୍ଧବେଳ ହୋଇଥିବାରୁ ଶତ୍ରୁପକ୍ଷ କଅଣ କରୁଥାନ୍ତି ସ୍ପଷ୍ଟ ଜଣାପଡ଼ୁ ନ ଥାଏ । ଆମେ ଖାଲି ଏତିକି ଖବର ପାଉଥାଉ ଯେ ହିଟ୍‌ଲର୍‌ର ଜର୍ମାନୀରେ ବୈଜ୍ଞାନିକମାନେ ପରମାଣୁ ତଥ୍ୟ ସନ୍ଧାନରେ ବହୁ ଆଗକୁ ଚାଲିଗଲେଣି । ଜର୍ମାନୀ ତ ମହାନ୍ ବୈଜ୍ଞାନିକ ଜାତି । ତା' ଛଡ଼ା ହିଟ୍‌ଲର୍ ବଡ଼ ବଡ଼ ପରମାଣୁ ବୈଜ୍ଞାନିକ ଡାକି ଧମକେଇ ଚମକେଇ କହୁଥାଏ—"ବୁଝିଥିବ ଖବରଦାର୍ ! ଯଦି ଏତେବେଳେ ପଛେଇ-ଯିବ, ତେବେ ତୁମକୁ ଦେଶଦ୍ରୋହୀ ବୋଲି କୁହାଯିବ । ଗୁଳି କରି ମରାଯିବ ସେତେବେଳେ ତୁମକୁ । ଜାତିର ଟେକ ରଖ । ସବୁ ସମ୍ମାନ ମିଳିବ । ପୃଥିବୀରେ ଜର୍ମାନୀ ଜାତି ଶ୍ରେଷ୍ଠ, ଏହାର ପ୍ରମାଣ ତୁମରି ହାତରେ । ଏତିକି ମନେରଖି କାମ କରିଯାଅ । ସବୁରି ଆଗରୁ ପରମାଣୁ ବୋମା ଏଇ ଜର୍ମାନୀ ହିଁ କରିବ, ଏ ମୋର ବିଶ୍ୱାସ ।"

ହିଟ୍‌ଲର୍-ଭୟରେ ଜର୍ମାନୀ ବୈଜ୍ଞାନିକ ମରିଥିବା ଥା'ନ୍ତି । ପ୍ରାଣ ବିକଳରେ ମୁଣ୍ଡରୁ ବୁଦ୍ଧି ବାହାରେ । ତେଣୁ କିଏ ଜାଣେ, କେତେ ନୂଆ ପରମାଣୁ ତଥ୍ୟ ବାହାର କରିଥିଲେ ଶତ୍ରୁପକ୍ଷ ସେତେବେଳେ ।

ଏଣେ ଆମପଟେ ବୈଜ୍ଞାନିକଙ୍କୁ ଆମେ ବୁଝାଉଥାଉ, କହୁଥାଉ—"ନୂଆ ପରମାଣୁ ତଥ୍ୟ ଆମର ଲୋଡ଼ା । ତାହେଲେ ଯାଇ ଯୁଦ୍ଧରେ ଆମେ ଜିଣିବା । ମଣିଷର ସ୍ୱାଧୀନତା ବଞ୍ଚିବ । ଗଣତନ୍ତ୍ରର ଟେକ ରହିବ ।" କିନ୍ତୁ ଏସବୁ ସତ୍ତ୍ୱେ ପରମାଣୁ ବୋମାର ନାଁ ଗନ୍ଧ ମୁଁ କାହାରିକୁ କହୁ ନ ଥାଏ । ଆମେ ଯେଉଁଭଳି ଗୋଟିଏ ମାରଣାସ୍ତ୍ର ତିଆରି କରୁଛୁ, ଯେଉଁଥିରେ ଶତ୍ରୁପକ୍ଷର ଲକ୍ଷ ଲକ୍ଷ ଲୋକ ଆଖି ପିଛୁଡ଼ାକେ ପୋଡ଼ି ପାଉଁଶ ହୋଇଯିବେ,

ଏ କଥା କେମିତି କାହାକୁ କହନ୍ତୁ ! ଆମ ଲୋକେ ସେ ଖବର ପାଇଥିଲେ କ'ଣ ଆମକୁ ରଖିଥାନ୍ତେ ! ଶତ୍ରୁ ହେଲେ ବି ତାକୁ ପୋକ ମାଛି ଭଳି ପୋଡ଼ି ମାରିବା, ସେ ପାଠ ଗଣତନ୍ତ୍ରରେ ନାହିଁ । ଲୋକେ ଶୁଣିଥିଲେ, ଆମ ଯୋଜନା ତ ସେଇଠି ସରିଯାଇଥାନ୍ତା । ତା'ଛଡ଼ା ଆମ ବୈଜ୍ଞାନିକମାନଙ୍କୁ ଛି ଛାକରି କରି ଓଲଟି ଦେଶଦ୍ରୋହୀ ବୋଲି କହିଥାନ୍ତେ ।

ଶତ୍ରୁ ପକ୍ଷ ଓ ଆମ ପକ୍ଷ ଭିତରେ ଏଇଭଳି ତାକତରକରେ ପ୍ରତିଯୋଗିତା ଚାଲିଥାଏ । ସବୁ ମାଡ଼ ପଡ଼ୁଥାଏ ବୈଜ୍ଞାନିକଙ୍କ ଉପରେ । ପୃଥିବୀରେ ପରମାଣୁ ତଥ୍ୟ ଖୋଜା ଚାଲିଥାଏ, ଏଇଭଳି ସେଦିନ ବିଶ୍ୱଯୁଦ୍ଧ ସମୟରେ ।

ସେତେବେଳକୁ ଆମେ ଶତ୍ରୁ ପକ୍ଷର ଢେର୍ ପଛରେ ପଡ଼ିଗଲୁଣି ବୋଲି ଖବର ରଟିଥାଏ । ଯୁଦ୍ଧରେ ଜର୍ମାନୀ ବହୁତ କ୍ଷତି କରିପାରିଥାଏ ମିତ୍ର ପକ୍ଷ ଦେଶସବୁର । ଆମ ପକ୍ଷର ଗୋଟିଏ ବଡ଼ ଶକ୍ତି ଥିଲି ଫ୍ରାନ୍‌ସ । ଦିନେ ଶୁଣାଗଲା ହିଟ୍‌ଲର୍ ଫ୍ରାନ୍‌ସର ରାଜଧାନୀ ପ୍ୟାରିସ୍ ଅଧିକାର କରିଗଲା । ମୁଣ୍ଡରେ ବଜ୍ର ପଡ଼ିଗଲା ଆମର । ଏବେ ହେବ କ'ଣ ! ଦୁର୍ଦ୍ଦାନ୍ତ ହିଟ୍‌ଲର୍ ଚୂହୁଁ ଚୂହୁଁ ଏମିତି ଗ୍ରାସିଯିବ ଏ ପୃଥିବୀଟାକୁ !

ଫ୍ରାନ୍‌ସର ଏଭଳି ଶୋଚନୀୟ ପରାଜୟ-ପାଇଁକୁ ଆମ ପକ୍ଷର ଅନ୍ୟ ଶକ୍ତିମାନେ ଧୀରେ ଧୀରେ ଦବ ଦବ ଆସୁଥାନ୍ତି । ସାରା ପୃଥିବୀର ଅଧେରୁ ବେଶୀ ଅଞ୍ଚଳରେ ଚାଲିଥାଏ ସେତେବେଳେ ଇଂଲଣ୍ଡର ରାଜୁତି । ଇଂଲଣ୍ଡ ଆମ ପକ୍ଷର । ଇଂଲଣ୍ଡବାସୀ ଗଣତନ୍ତ୍ରରେ ବିଶ୍ୱାସ କରନ୍ତି, ହେଲେ ଇଂଲଣ୍ଡ, ଫ୍ରାନ୍‌ସ ଆମ ପକ୍ଷରେ ଥିଲେ ବି ସେମାନେ ସେତେବେଳେ ଥା'ନ୍ତି ସାମ୍ରାଜ୍ୟବାଦୀ ଶକ୍ତି । ଭାରତ, ଆଫ୍ରିକା, ଏସିଆ ଦକ୍ଷିଣ-ପୂର୍ବ ଅଞ୍ଚଳର ବର୍ମା, ଶ୍ୟାମ, ଇଣ୍ଡୋଚୀନ, ଇଣ୍ଡୋନେସିଆ ପ୍ରଭୃତି ସବୁ ଦେଶ, ମହାଦେଶକୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ନିଜ ପାଦ ତଳେ ଚାପି ରଖିଥାନ୍ତି । ତେଣୁ ଇଂଲଣ୍ଡ ଓ ଫ୍ରାନ୍‌ସକୁ ପ୍ରକୃତ ଗଣତନ୍ତ୍ର ଦେଶ ବୋଲି ଲୋକେ କହୁ ନ ଥାନ୍ତି ! ବରଂ ଘୃଣା କରୁଥାନ୍ତି ।

ଭାରତରେ ତ ସେତେବେଳେ ଗାନ୍ଧୀ ମହାତ୍ମା ମହା ଆନ୍ଦୋଳନ ଆରମ୍ଭ କରିଦେଇଥାନ୍ତି । "ବିଲାତି ସରକାର ଭାରତ ଛାଡ଼" ବୋଲି ଭାରତରେ କୋଟି କୋଟି ଲୋକ ପାଟି କରୁଥାନ୍ତି । ସେମିତି ଅନ୍ୟାନ୍ୟ ପରାଧୀନ ଦେଶରେ ମଧ୍ୟ ଲାଗିଯାଇଥାଏ

ସ୍ୱାଧୀନତା ଆନ୍ଦୋଳନ । ସେ ସୁଯୋଗ କି ଶତ୍ରୁ ପକ୍ଷ ଛାଡ଼େ ! ଯୁଦ୍ଧରେ ଇଂଲଣ୍ଡ ଉପରେ ହିଟ୍‌ଲର୍ ଗୋଟାକୁ ଗୋଟା ବୋମା ପକେଇ ତାକୁ ଛାରଖାର କରି ଚାଲିଥାଏ । ଏସିଆରେ ଜାପାନୀମାନେ ତା' ଦେଶଆଡ଼ୁ ଜୋର୍ ଚଢ଼ାଉ କରୁଥାନ୍ତି ଇଂଲଣ୍ଡ ଓ ଫ୍ରାନ୍‌ସର 'ସାମ୍ରାଜ୍ୟ' ଉପରେ । ସେମାନେ ସେତେବେଳକୁ ଦେଶ ପରେ ଦେଶ ଜୟ କରି ଏକେବାରେ ପହଞ୍ଚିଯାଇଥାନ୍ତି ଭାରତର ପୂର୍ବ ସୀମାରେ । ଯାହା ଜଣାଯାଉଥାଏ, ଫ୍ରାନ୍‌ସ ଭଳି ଆମ ପକ୍ଷରେ ବହୁ ବଡ଼ ଶକ୍ତି ଇଂଲଣ୍ଡ ମଧ୍ୟ ଟଳି ପଡ଼ିବ ଆଉ ଟିକେକେ । ଆଉ ରହିଲା କିଏ ? ରୁଷ ଆଉ ଆମ ଆମେରିକା । ରୁଷ ଜର୍ମାନୀକୁ ଅଟକେଇଥାଏ ଖୁବ୍ । ଆଉ ଆମେ ତ ଚାଲିଥାଉ ଗୋଟିଏ ନିଶାରେ । ଶତ୍ରୁକୁ ହଟେଇବାକୁ ହେଲେ ପରମାଣୁ ବୋମା ଛଡ଼ା ଆଉ ବାଟ ଅଛି, ସେ କଥା ମତେ ଲାଗୁ ନ ଥାଏ ।

ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍‌ଟଙ୍କ ସାଙ୍ଗରେ ପ୍ରାୟ ପ୍ରତି ସପ୍ତାହରେ ମୋର ଗୁପ୍ତ ଆଲୋଚନା ହେଉଥାଏ । ମତେ ଦେଖିଲା କ୍ଷଣି ସେ ପଚାରୁଥାନ୍ତି—

"ଓପି ! ତମ ସ୍ୱାସ୍ଥ୍ୟ ଭାରି ଖରାପ ହୋଇଗଲାଣି ! ତମେ କ'ଣ ଶୋଉନ ଆଦୌ ? ସେମିତି ଦିଶୁଚ ଯେ ! ଆଚ୍ଛା, ସେ କାମ କେତେ ଦୂର ଆଗେଇଲା, ଓପି !"

ମୋ ମୁଣ୍ଡ ତଳକୁ ନଇଁ ପଡ଼ୁଥାଏ । କ'ଣ କହିବି ? ପରମାଣୁ ବୋମା ତିଆରି ଘରବାଡ଼ି ତିଆରି କାମ ହୋଇଛି ଯେ ପ୍ରତି ହପ୍ତାକୁ ହପ୍ତା ଉଚ୍ଚକୁ ଉଚ୍ଚ ଉଠୁଛି କି ନାହିଁ ଆଖିରେ ଦେଖି ହବ ? ମୁଁ ତ ଲାଗିଥାଏ ପ୍ରାଣପଣେ । ରାତିରେ ମୋଟେ ଚାରିଘଣ୍ଟା ଶୋଇବାକୁ ସମୟ ପାଉଥାଏ । ଛଅ ଫୁଟ ଉଚ୍ଚରେ ମଣିଷଟିଏ ମୁଁ । ମୋ ଦେହରେ ଯାହା ମାଉଁସ ଥିଲା ସେତେବେଳକୁ ସବୁ ଝଡ଼ିଝାଡ଼ି ମାତ୍ର ୧୩୦ ପାଉଣ୍ଡ ଓଜନ ଥାଏ ସେଥିରେ । ମୋ ପିନ୍ଧା କୋଟ୍ ଖଣ୍ଡିକ ବାଦୁଡ଼ିର ଡେଣା ଭଳି ଝୁଲି ପଡ଼ୁଥାଏ ହାତରୁ, କାନ୍ଧରୁ । ତଥାପି ସେଇଥିରେ ମୁଁ ଧପାଉଥାଏ ଏଠୁ ସେଠିକି, ସେଠୁ ଏଠିକି ।

ନିତି ଅଫିସ୍ କାମ ବାହାରେ ଶହ ଶହ ଲୋକଙ୍କୁ ଦେଖାକରି, ବୈଜ୍ଞାନିକମାନଙ୍କୁ ପରାମର୍ଶ ଦିଅ, ଉତ୍ସାହ ଦିଅ, ଏଇ କାମ କରିବାରେ ଭାଙ୍ଗି ପଡ଼ୁଥାଏ ମୁଁ । ସମସ୍ତଙ୍କୁ ତ ମୁଁ ଉତ୍ସାହ ଦେଉଥାଏ । କିନ୍ତୁ ମତେ କିଏ ଭଲା ଉତ୍ସାହ ଦେବ ? ତଥାପି ଟିକିଏ ନରୋଲା

ବେଳ ପାଇଲେ ମୁଁ ଗୋଟିଏ କାମ କରୁଥାଏ । ସାହିତ୍ୟ, ସଙ୍ଗୀତ ଓ ଚିତ୍ର ଆଙ୍କିବାରେ ମୋର ସେତିକି ସମୟ କଟୁଥାଏ । ପିଲାଦିନୁ ଏଇ ଅଭ୍ୟାସଟିକୁ ମୁଁ ବଞ୍ଚେଇଥାଏ । ଏଇ ଅଭ୍ୟାସ ମତେ ବି ବଞ୍ଚେଇଥାଏ ।

ସେଦିନ ପ୍ରେସିଡେଣ୍ଟ୍ ରୁଜ୍‌ଭେଲଟ୍‌ଙ୍କ ସାଥିରେ ଦେଖା କରିବା ମାତ୍ରେ ସେ ମୋତେ ମୋ ସ୍ୱାସ୍ଥ୍ୟ କଥା ନ ପଚାରି ଗୋଟିଏ ଅଦ୍ଭୁତ ପ୍ରଶ୍ନ ପଚାରି ଚମକେଇଦେଲେ—

"ଓପି !" ବ୍ୟଗ୍ର କଣ୍ଠରେ କହିଲେ ସେ । "ଜର୍ମାନୀର ଜଣେ ମହିଳା ବୈଜ୍ଞାନିକ— ତାଙ୍କ ନାଁ ଲିସ୍ ମିଟ୍‌ନର"—

"ହଁ, କଅଣ ହେଲା ?" ମୁଁ ଆହୁରି ବ୍ୟଗ୍ର କଣ୍ଠରେ ପଚାରୁ ପଚାରୁ ପ୍ରେସିଡେଣ୍ଟ୍‌ଙ୍କ ଆଡ଼କୁ ଝୁଙ୍କି ପଡ଼ିଲି ।

"ସେ ଜର୍ମାନୀରୁ ପଳେଇ ଆସିଛନ୍ତି !" ପୂର୍ବ ପରି କହୁଥାନ୍ତି ସେ ।

"କଅଣ କହିଲେ ? ମିଟ୍‌ନର ? ଗୁପ୍ତ ପରମାଣୁ ତଥ୍ୟର ମାଲିକାଣୀ 'ମିଟ୍‌ନର' ? ପଳେଇ ଆସୁଛନ୍ତି ? ଜର୍ମାନୀରୁ ?" ସେତିକିରେ ମୋ ତଣ୍ଟି ଶୁଖିଗଲା । ପାଟି ଖିଲ ବାନ୍ଧିଗଲା ।

"ହଁ !" ପ୍ରେସିଡେଣ୍ଟ୍ ତାଙ୍କ ପକେଟ୍‌ରୁ ରୁମାଲ୍ କାଢ଼ି ମୁହଁ ପୋଛି ବସିଲେ । ଟିକିଏ ଦମ୍ ନେଲେ । ଯେତେକ ଭାର ହାଲୁକା ହୋଇ ପଡ଼ୁଥାନ୍ତି ସେ । ସେଇଭଳି ନିଃଶ୍ୱାସ ନେଇ କହିଲେ—

"ଭଗବାନଙ୍କର କି ମାୟା କେଜାଣି, ଓପି ! କେବଳ ମିଟ୍‌ନର ନୁହନ୍ତି, ହିଟ୍‌ଲର୍ ଓ ମୁସୋଲିନୀ ଭୟରେ ଆହୁରି କେତେଜଣ ବଡ଼ ବୈଜ୍ଞାନିକ ଶତ୍ରୁ ଦେଶରୁ ଲୁଚି ପଳେଇ ଆସିଲେଣି ।" ତା'ପରେ ସେ ଆଉ କେତୋଟି ନାଁ କହିଲେ—"ଓଟୋ ଫ୍ରିସ୍, ଏନ୍‌ରିକୋ ଫର୍ମି, ନିଲସ୍ ବୋର୍...... ।"

ମୋ କାନ ତାବଦା ହୋଇଗଲା । ସେ ଯୋଉ ନାଁ ସବୁ ମୁଁ ଶୁଣୁଥିଲି, ସେତେବେଳେ ସେମାନେ ସମସ୍ତେ ପରମାଣୁ ତଥ୍ୟର ଜଣେ ଜଣେ ଗୁରୁ । ଏ ଗୁରୁମାନେ ହିଟ୍‌ଲର୍ ମୁସୋଲିନୀଙ୍କୁ ଛାଡ଼ି ଚାଲି ଆସିବେ ଆମ ଦେଶକୁ, କିଏ ବିଶ୍ୱାସ କରନ୍ତା ସେ ଭଳି ଯୁଦ୍ଧ ସମୟରେ !

କିନ୍ତୁ ସେଇ ଥିଲା ଭଗବାନଙ୍କ ବରଦ୍! ଅତ୍ୟାଚାରୀ ଏକଛତ୍ରବାଦୀ ହିଟ୍‌ଲର୍‌ର ମରଣବେଳ ସେଇଠୁ ଆରମ୍ଭ ହୋଇଗଲା । ଗଣତନ୍ତ୍ରରେ ସ୍ୱାଧୀନ ମଣିଷର ବିଜୟର ସୂଚନା ସେଇଠୁ ଦେଖାଦେଲା ।

ଏଡ଼େ ଏଡ଼େ ବଡ଼ ବୈଜ୍ଞାନିକମାନେ ଯୁଦ୍ଧବେଳେ ନିଜ ଦେଶ ଛାଡ଼ି ଅନ୍ୟ ଶତ୍ରୁ-ଦେଶକୁ ପଳାଇ ଆସିଲେ କାହିଁକି ? ସେମାନେ କ'ଣ ହୀନ ଦେଶଦ୍ରୋହୀ ? ମୋ ମନରେ ତଥାପି ଗୋଟିଏ ସନ୍ଦେହ ଉଙ୍କି ମାରୁଥାଏ । କିନ୍ତୁ ସବୁ କଥା ଶୀଘ୍ର ଜଣାପଡ଼ିଗଲା ।

ଜର୍ମାନୀ ଓ ଇଟାଲିର ପଳାତକ ପରମାଣୁ ବୈଜ୍ଞାନିକମାନେ ଇତିମଧ୍ୟରେ ଆସି ପହଞ୍ଚିସାରିଥାନ୍ତି ଆମ ଦେଶରେ । ସେମାନେ ଆଉ କରନ୍ତେ କ'ଣ ? ଦିନେ ପ୍ରେସିଡେଣ୍ଟଙ୍କ ଠାରୁ ଚିଠିଟିଏ ପାଇଲି । ଲେଖାଥିଲା—"ଓପି ! ମିଟ୍‌ନର୍, ଫର୍ମି, ଫ୍ରିସ୍ ପ୍ରଭୃତି ତମର ଅଧୀନରେ କାମ କରିବେ ।" ତା ସାଥିରେ ଆଉ ପଦେ ଲେଖାଥିଲା—"ଦେଖ ! ଏସବୁ କିଛି ନୁହେଁ, ଆମ ଯୋଜନା ଯଦି ନ ଆଗାଏ ତେବେ କଥା ସରିଯିବ !"

ସେଇଥିରୁ ବୁଝିନେଲି ମୁଁ ସବୁ କଥା । ହିଟ୍‌ଲର୍ ତା' ଦେଶରୁ କେତେଜଣ ବୈଜ୍ଞାନିକଙ୍କୁ ହରେଇଛି ବୋଲି ପରମାଣୁ ବୋମା କଥା ଭୁଲିଯାଇ ନାହିଁ; ପ୍ରତିଯୋଗିତା ସରି ନାହିଁ ।

ପଳାତକ ବୈଜ୍ଞାନିକମାନଙ୍କ ସାଥିରେ ସେଦିନ ଗୋଟିଏ ଭୋଜିରେ ମୋର ଦେଖାଦେଲା । ଯାହା ଶୁଣିଲି, କଲିଜା ପାଣି ହୋଇଗଲା ।

"ହେ ଭଗବାନ!" ମୋ ଦେହ ଶୀତେଇ ଉଠିଲା । ଦାନ୍ତରେ ଦାନ୍ତ ବାଜି ଯାଉଥାଏ । ଢୋକେ ଗରମ ଚାହା—ଶୀଘ୍ର ଢୋକ ଦେଇ କହିଲି—"ହିଟ୍‌ଲର୍ କ'ଣ ଏ ଯୁଗର କଂସାସୁର ! ନିଜ ଦେଶର ଲକ୍ଷ ଲକ୍ଷ ଜୀଅନ୍ତା ମଣିଷଙ୍କୁ ପୋଡ଼ି ଦଉଛି, ପୋତି ପକଉଛି, ବିଷାକ୍ତ ଗ୍ୟାସ୍ ଶୁଙ୍ଘେଇ ମାରି ଦଉଛି ! ଏ କଥା ସତ ?"

ମାଡ଼ାମ୍ ମିଟ୍‌ନର୍ ଛୋଟ ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦି ଉଠିଲେ । ଫର୍ମି ରାଗରେ ନିଜ କୋଟ୍‌ଟିକୁ ଏଡ଼େ ଜୋର୍‌ରେ ଟାଣିଦେଲେ ଯେ ଗୋଟିଏ ବୋତାମ ଠକ୍

କରି ଛାଡ଼ି ଥୋଡ଼ାଏ ଦୂରରେ ଯାଇ ପଡ଼ିଲା । ଅଟୋ ଫ୍ରିସ୍ ତଳକୁ ମୁହଁକରି ବସି ରହିଲେ ।

ସେମାନେ ସମସ୍ତେ ଥିଲେ ଗୋଟିଏ ଜାତିର ଲୋକ ଯାହାଙ୍କ ଉପରେ କୋପଦୃଷ୍ଟି ପଡ଼ିଥିଲା ହିଟ୍‌ଲର୍‌ର । ସେ ଜାତିର ନାଁ ଇହୁଦୀ ବା ଜଉ । ପୃଥିବୀର ଅଧିକାଂଶ ବଡ଼ ବୈଜ୍ଞାନିକ ଏହି ଜାତିର । ଅତି ଧନୀ, ଅତି ବୁଦ୍ଧିମାନ୍ ଲୋକ ହିସାବରେ ଇହୁଦୀମାନେ ଗଣା ହୁଅନ୍ତି । ସେତେବେଳେ ଇହୁଦୀମାନଙ୍କର ନିଜର ବୋଲି କୌଣସି ଦେଶ ନ ଥିଲା । ସେମାନେ ସାରା ପୃଥିବୀରେ ବିଭିନ୍ନ ଦେଶରେ ବସବାସ କରି ରହୁଥାନ୍ତି । ଆମ ବାଇବେଲ୍ କହେ ଇହୁଦୀମାନଙ୍କର ନିଜ ଜନ୍ମଭୂମିର ନାଁ ଇସ୍‌ରାଏଲ୍ । ପ୍ରଭୁ ଯୀଶୁଖ୍ରୀଷ୍ଟ ନିଜେ ଇହୁଦୀ ଜାତିର ଲୋକ ।

ସେତେବେଳେ ଜର୍ମାନୀରେ ବହୁତ ଇହୁଦୀ ରହୁଥିଲେ । ସେମାନେ ଭାରି ବ୍ୟବସାୟୀ ଲୋକ ବି । ଖୁବ୍ ଧନୀ । ହିଟ୍‌ଲର୍ ଇହୁଦୀମାନଙ୍କ ଉପରେ ଭାରି ଚିଡ଼ୁଥାଏ । କାରଣ ତା ମତରେ ଇହୁଦୀମାନେ ଜର୍ମାନ୍ ଜାତିର ଲୋକଙ୍କୁ ବ୍ୟବସାୟରେ ଠକାକାଟି ଧନୀ ହୋଇଯାଇଥାନ୍ତି । ତା'ଛଡ଼ା ଇହୁଦୀମାନେ ଜର୍ମାନୀର ମୂଳ ଲୋକ ନୁହନ୍ତି । ହିଟ୍‌ଲର୍ ମତରେ ଜର୍ମାନୀ ଦେଶର ମୂଳ ଲୋକେ ତ ମଣିଷଙ୍କ ଭିତରେ ଶ୍ରେଷ୍ଠ ମାନବ । ତେଣୁ ଶ୍ରେଷ୍ଠ ଲୋକଙ୍କ ଭିତରେ ବିଦେଶୀ ଇହୁଦୀମାନେ କେମିତି ରହିବେ ସେଠି ? ଏଇ କାରଣରୁ ହିଟ୍‌ଲର୍ ଚାହୁଁଥାଏ କେମିତି ସେ ଇହୁଦୀମାନଙ୍କୁ ତାଙ୍କ ଦେଶରୁ ତଡ଼ିଦେବ !

ଏଇଥିପାଇଁ ହିଟ୍‌ଲର୍ ଆରମ୍ଭ କରିଥିଲା ଗୋଟାଏ ଯୋଜନା । ସେ ଯୋଜନା ଏତେ ହୀନ ଯେ ପରମାଣୁ ବୋମାଠୁ ବେଶୀ ନୃଶଂସ ହୋଇଗଲା ତା ଫଳ !

ସେତେବେଳକୁ ପ୍ରାୟ ଛ ଲକ୍ଷ ଇହୁଦୀଙ୍କୁ ହିଟ୍‌ଲର୍ ମାରି ସାରିଥାଏ । ତା'ର ଇଚ୍ଛା ଥିଲା, ପୃଥିବୀରୁ ଇହୁଦୀ ଜାତିକୁ ମୂଳପୋଛ କରିଦେବା । ସେଇ ଲକ୍ଷ୍ୟରେ ସେ ଆଗ ନିଜ ଦେଶରେ ଆରମ୍ଭ କରିଥାଏ ତା'ର ଇହୁଦୀମାରଣ ଯଜ୍ଞ । ଓହୋ, କି କରୁଣ ସେ ଘଟଣାମାନ ! କୁନି କୁନି ପିଲାଙ୍କୁ ବି ବନ୍ଧୁକରୁ ଗୁଳି କରି ମାରି ଦିଆଯାଉଥାଏ । ବଡ଼ ବଡ଼ ଗାତ ଖୋଳି ହଜାର ହଜାର ଜୀଅନ୍ତା ଲୋକଙ୍କୁ ତା' ଭିତରେ ପକେଇ ପୋତି ଦିଆହେଉଥାଏ । ବଡ଼ ବଡ଼ ଘର ଭିତରେ ହଜାର ହଜାର ଲୋକଙ୍କୁ ଖୁନ୍ଦି ଦେଇ କବାଟ

ଝରକା ବନ୍ଦ କରି ଦେଇ ଘର ଭିତରକୁ ବିଷାକ୍ତ ଗ୍ୟାସ୍ ଛାଡ଼ି ଦିଆଯାଉଥାଏ । ଲୋକେ ବିକଳ ହୋଇ ପାଟି କରୁ କରୁ ବିଷାକ୍ତ ଗ୍ୟାସ୍ ଶୁଙ୍ଘି ଶୋଇପଡ଼ୁଥାନ୍ତି ଚିର ନିଦ୍ରାରେ । ଆହୁରି ଅନେକ ଜଘନ୍ୟ ବ୍ୟବସ୍ଥାରେ ମରାଯାଉଥାଏ ଇହୁଦୀମାନଙ୍କୁ । ସେଗୁଡ଼ାକ କାନ ଶୁଣିବ ନାହିଁ—



ଏଣେ ଯୁଦ୍ଧରେ ଲୋକେ ମରୁଥାନ୍ତି ନିତି ହଜାର ହଜାର । ତେଣେ ହିଟ୍‌ଲର୍‌ର ଇହୁଦୀମାରଣ-ଯଜ୍ଞରେ ନିତି ମରୁଥାନ୍ତି ହଜାର ହଜାର ଇହୁଦୀ । ଧରଣୀ ଥରି ଥରି ଡାକ ଛାଡ଼ୁଥାଏ । କିନ୍ତୁ କିଏ ବା ବନ୍ଦ କରନ୍ତା ସେ ଅସୁରର ଲୀଳା ? ମିତ୍ରପକ୍ଷ ତ ହାରୁଥାନ୍ତି । ଅସୁର ତ ଜିତୁଥାଏ । ସେଦିନ ପୃଥିବୀଯାକର ଲୋକେ ହାହାକାର କରୁଥାନ୍ତି । ଶତ୍ରୁ ମିତ୍ର ଉଭୟ ପକ୍ଷର ସାଧାରଣ ଲୋକେ ଚର୍ଚ୍ଚରେ, ମନ୍ଦିରରେ, ମସ୍‌ଜିଦ୍‌ରେ ନିତି ପ୍ରାର୍ଥନା କରୁଥାନ୍ତି ଭଗବାନଙ୍କୁ । ଡାକୁଥାନ୍ତି ସେମାନେ—"ହେ ଭଗବାନ ! ସ୍ୱର୍ଗରୁ ଓହ୍ଲାଇ ଆସ । ନ ହେଲେ ଏ ମର୍ତ୍ତ୍ୟପୁରୀ ଆଉ ରହିବ ନାହିଁ । ସଂସାରରୁ ଧର୍ମ ଚାଲିଗଲା । ମଣିଷ ଦୈତ୍ୟ ହୋଇଗଲା !"

ଦିନ ପରେ ଦିନ ଲୋକଙ୍କର ଏଇ ପ୍ରାର୍ଥନା ଚାଲିଥାଏ । କିନ୍ତୁ କାହାନ୍ତି, କେଉଁଠି ଥାନ୍ତି ଭଗବାନ ?

ସେତେବେଳକୁ ଆଠ ବର୍ଷ ଧରି ଯୁଦ୍ଧରେ ନରମେଧ ଚାଲିଲାଣି । ଭଗବାନ ତଥାପି ଶୁଣୁ ନ ଥାନ୍ତି । ୧୯୪୫ ଜୁଲାଇ ଆଉ କେଇମାସ ଥାଏ ଆଗକୁ । ହଠାତ୍ ସେଦିନ ରାତିରେ ମୁଁ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲି । ଅନେକ ବର୍ଷ ହେବ ସ୍ୱପ୍ନ କେମିତିକିଆ ଜିନିଷ ମୋ ଆଖି ଦେଖି ନ ଥାଏ ।

—ରାତି ପାହାନ୍ତିଆ ପହର । ଖୁବ୍ ନିଦ ଜମି ଯାଇଥାଏ ଆଖିରେ । ହଠାତ୍ ସ୍ୱପ୍ନରେ ମୁଁ ଦେଖିଲି—ଆକାଶ ହାଲୋଳମୟ ହୋଇଗଲା । ଶହ ଶହ ସୂର୍ଯ୍ୟଠୁ ବଳି ଉଜ୍ଜ୍ୱଳ ସେ ଆଲୋକରେ ମୋ ଆଖି ପ୍ରାୟ ଅନ୍ଧ ହୋଇଗଲା । ତଥାପି ମତେ ଲାଗିଲା, ନାନା ରଙ୍ଗର ଖେଳ ଯେମିତିକି ଆରମ୍ଭ ହୋଇଗଲା ସେ ଆଲୋକ ଭିତରେ । ମୁଁ ନିଠେଇ କରି ଚାହିଁଥାଏ ସେ ଆଲୋକର ଗତିବିଧିକୁ । ଟିକିଏ ସମୟ ପରେ ମତେ ଜଣାଗଲା, ଯେମିତିକି ସେ ଆଲୁଅ ଆକାଶରୁ ଜୋର୍‌ରେ ଖସିଆସିଲା ଭୂଇଁ ଉପରକୁ । ମୁଁ ସାଙ୍ଗେ ସାଙ୍ଗେ ଦଉଡ଼ିଗଲି ସେଇଠିକି । କିନ୍ତୁ ମୁଁ ଯେତେ ଯେତେ ଆଗକୁ ଦଉଡ଼ୁଥାଏ, ସେ ଆଲୁଅ ସେତିକି ସେତିକି ଦୂରକୁ ପଳାଉଥାଏ । ସବାଶେଷରେ ଆଲୁଅକୁ ଧରି ନ ପାରି ମୁଁ ଅଟକି ଗଲି । ଭୂଇଁ ଉପରେ ଆଣ୍ଠୁମାଡ଼ି ବସିପଡ଼ି ପ୍ରାର୍ଥନା କଲି—"ହେ ଆଲୋକମୟ ଶକ୍ତି ! ତୁମେ ଯେ ପାର ସେ ହୁଅ ପଛକେ, ମତେ ଧରା ଦିଅ । ମୁଁ ଜାଣିବାକୁ ଚାହେଁ ତ ତୁମେ କିଏ ? ଏତେ ଶକ୍ତିର ଅଧିକାରୀ ତୁମେ ହେଲ କେମିତି ? ମତେ ଦୟାକରି କହ !"

ମୋର ଅନବରତ ପ୍ରାର୍ଥନାରେ ଖୁସି ହେଲା ସେ ଆଲୋକ । ଠାଏ ଅଟକିଗଲା । ଧୀରେ ଧୀରେ ସେ ତା'ର ତେଜ କମେଇଦେଲା । ତା' ତେଜ ଯଥେଷ୍ଟ ମଉଳି ଯିବାରୁ ମୁଁ ତା' ପାଖକୁ ଯିବାକୁ ସାହସ କଲି । ପାଖକୁ ଯାଇ ଯାହା ମୁଁ ଦେଖିଲି ଆଉ ଶୁଣିଲି ମୋ ପ୍ରାଣ ଆନନ୍ଦରେ ନାଚି ଉଠିଲା । ଗୋଟିଏ ହଣ୍ଡା ଆକୃତିର କଣ୍ଟା ଜିନିଷ, ସେଇଟା ନିଉ ମେକ୍‌ସିକୋ ମରୁଭୂମିର ବାଲିରେ ଥୁଆ ହୋଇଥାଏ । ମୁଁ ତା' ପାଖକୁ ଯିବା ମାତ୍ରେ ତା' ଭିତରୁ ସ୍ୱର ଶୁଣାଗଲା –

"ହଁ ନା ! ଯୋଉ ଶକ୍ତିକୁ ଖୋଜୁଥିଲୁ, ସେଇ ମୁଁ । ଭଗବାନ ପଠେଇଲେ ମତେ ତୋ ପାଖକୁ । ଏବେ ମୁଁ ତୋର କି ଉପକାର କରିବି କହ ।"

"ଆଗେ ଯୁଦ୍ଧ ବନ୍ଦ କର ।" ମୁଁ ବିନୀତ ହୋଇ ନମସ୍କାର କରୁ କରୁ କହିଲି, ସେ ମହାଶକ୍ତିକୁ ।

"ତଥାସ୍ତୁ ! (ସେଇଆ ହେଉ)" ଗୋଟିଏ ଗଁ ଗଁ ଶବ୍ଦ ବାହାରିଲା ସେ ହାଣ୍ଡି ଭିତରୁ ।

ତା'ର ସେଭଳି ଶବ୍ଦ ଶୁଣି ମୁଁ ଚମକି ପଡ଼ିଲି । କାଳେ ମୋ ପ୍ରାର୍ଥନା ଶୁଣି ମହାଶକ୍ତିକୁ କଷ୍ଟ ହେଲା ଭାବି ଆଉ ଥରେ ପ୍ରାର୍ଥନା କରି କହିଲି—"ଯୁଦ୍ଧକୁ ସବୁଦିନ ପାଇଁ ବନ୍ଦ କରିଦିଅ । ଯେମିତିକି ମଣିଷ ମଣିଷକୁ ମାରିବା ପାଇଁ କୌଶଳ କରିବ ନାହିଁ ହିଟ୍‌ଲର୍ ଭଳି ।

ଏଥର ଗୋଟିଏ ପ୍ରକାର ଅଦ୍ଭୁତ ହସ ବାହାରିଲା ସେ ହାଣ୍ଡି ଭିତରୁ ।

"ହସୁଚ କାହିଁକି ମହାଶକ୍ତି ?" ପଚାରିଲି ମୁଁ । କେତେବେଳ ପରେ ହାଣ୍ଡି ଭିତରୁ ହସ ବନ୍ଦ ହେଲା । ଏଥର ଗୋଟିଏ କୁନି ପିଲାର ସ୍ୱର ଟିଏ ସତେକି ବାହାରିଲା ସେ ହାଣ୍ଡି ଭିତରୁ, ଉତ୍ତର ଦେଲା ସେ—

"ଓପି ! ତୁ ଯାହା କହୁଚୁ ସତ ହେବ । ହେଲେ ଚିରଦିନ ପାଇଁ ଯୁଦ୍ଧକୁ ବନ୍ଦ କରିବା ଭାରି କଷ୍ଟ । ଯଦି ସେ କଥା ଚାହୁଁ, ତେବେ କହ—ତୁମ ବୈଜ୍ଞାନିକମାନେ ମତେ ଯୁଦ୍ଧରେ ନ ଲଗେଇ ସଂସାରକୁ ଶାନ୍ତି ଆଣିବା କାମ ଦେବେ ମତେ ?"

ମୁଁ ଚମକି ପଡ଼ିଲି । କଅଣ ହେଲା ? ମୋର ବିଶ୍ୱାସ ହେଲା ନାହିଁ ମହାଶକ୍ତି କଥାରେ । ମନେ ମନେ ଭାବିଲି ମୁଁ—"ଯୋଉ ମହାଶକ୍ତି ପୃଥିବୀକୁ ଜାଳିଦେଇ ପାରିବ, ସେଥିରୁ ପୁଣି ଶାନ୍ତି ବାହାରିବ ?"

ଗୁଡ଼ୁଂକିନା ମୋ ନିଦ ଭାଙ୍ଗିଗଲା । ବିଛଣା ଝାଳରେ ଓଦା ହୋଇଯାଇଥାଏ । ଆଖି ଫିଟେଇ ଚାରିଆଡ଼କୁ ଚାହିଁଲି । କେହି କୁଆଡ଼େ ନାହାନ୍ତି । ତେବେ ଯାହାସବୁ ଦେଖିଲି ଶୁଣିଲି ସବୁ କଅଣ ମିଛ ? ଖାଲି ସ୍ୱପ୍ନ !

ମିଛ ନୁହେଁ କି ସ୍ୱପ୍ନ ନୁହେଁ । ଦିନ କେଇଟାରେ ମହାଶକ୍ତିର କଥା ଅକ୍ଷରେ ଅକ୍ଷରେ ଫଳିଗଲା । ହିଟ୍‌ଲର୍‌ର ବୈଜ୍ଞାନିକମାନେ ପରମାଣୁବୋମା ଉଦ୍ଭାବନ କରିବା ପୂର୍ବରୁ ପ୍ରଥମେ ଆମେ ପୃଥିବୀକୁ ମହାଶକ୍ତିର କରାମତି ଦେଖେଇଦେଲୁ ।

୧୯୪୫ ଜୁଲାଇ ଷୋଳ ତାରିଖ ଦିନ, "ଜରେ ଝିଲ୍" ଉପରେ ଯୋଉ ପରମାଣୁ ବୋମା ଫୁଟିଲା ସେ ଥିଲା ପୃଥିବୀର ପ୍ରଥମ ପରମାଣୁ ବୋମା । ସେ ଖବର ଦୁନିଆ ଜାଣିବାମାତ୍ରେ ଶତ୍ରୁପକ୍ଷରେ ଘାଲେଣି ପଡ଼ିଗଲା ।

ପ୍ରତିଯୋଗିତାରେ ଆମର ଜୟ ହେଲା । ଏକଛତ୍ରବାଦର ପରାଜୟ ହେଲା । ଗଣତନ୍ତ୍ରର ଜୟ ହେଲା ।




ପରମାଣୁ ବୋମାର ଉଦ୍ଭାବକ ବୋଲି ଜଗତରେ ମୋ ନାଁ ଡାକ ହୋଇଗଲା । କିନ୍ତୁ ମୋ ସାଙ୍ଗ ବୈଜ୍ଞାନିକ କେତେଜଣ ରାଗରେ ମତେ ଗାଳି ଦେଲେ । କହିଲେ— "ନିଆଁ ଲଗା ଓପି ! ପୃଥିବୀକୁ ଜାଳି ଦେବାକୁ ଅସ୍ତ୍ରଟିଏ ରଖିଦେଇ ଗଲା ।"

ବନ୍ଧୁମାନଙ୍କର ଏ ଗାଳି ମତେ ପ୍ରକୃତରେ ଖରା ବାଧୁଥିଲା । ମୋ ବିବେକ ବି ସବୁବେଳେ ମତେ ଛୁଇଁମୁଇଁ କରି କାମୁଡ଼ିଲା । ସତରେ କଅଣ ମୁଁ ଏ ସୁନାର ପୃଥିବୀକୁ ଧ୍ୱଂସ କରିଦେବାର ସୂତ୍ରଟିଏ ମଣିଷକୁ ବତେଇବା ପାଇଁ ଜନ୍ମ ହୋଇଥିଲି ? ସବୁବେଳେ ଏଇଆ ଭାବିଲି ମୁଁ ।

ମୋର ସୁନାମ ବଢ଼ି ଚାଲିଥାଏ । ପ୍ରାୟ ୧୮ ବର୍ଷ ପରେ 'ପ୍ରେସିଡ଼େଣ୍ଟ୍ କେନେଡ଼ି' ମତେ ଗୋଟିଏ ବଡ଼ ପୁରସ୍କାର ଦେଲେ । ସେ ପୁରସ୍କାରର ନାଁ "ଫର୍ମି ପୁରସ୍କାର" । ତା' ମୂଲ୍ୟ ପଚାଶ ହଜାର ଡଲାର ।

ତମର ମନେ ଥିବ ଇଟାଲୀରୁ ତଡ଼ାଖାଇ ଇହୁଦୀ ବୈଜ୍ଞାନିକ ଫର୍ମି ପଳେଇ ଆସିଥିଲେ । ସେ ମୋ ଅଧୀନରେ କାମ କରୁଥିଲେ । ସେ ଏଡ଼େ ବଡ଼ ବୈଜ୍ଞାନିକ ଯେ ତାଙ୍କ ନାଁରେ ଆମ ଦେଶରେ ବଡ଼ ବଡ଼ ବୈଜ୍ଞାନିକମାନଙ୍କୁ ଗୋଟିଏ ପୁରସ୍କାର ଦିଆଗଲା । ମୁଁ ସେଇ ଫର୍ମି ପୁରସ୍କାର ପାଇଥିଲି ।

ହଁ ଶେଷ କଥାଟି କହିଦିଏ ଏଥର । ଯେ ଦିନ ଯୋଉ ସ୍ୱପ୍ନ ମୁଁ ଦେଖିଥିଲି, ତା'ର ଶେଷ ଫଳ ଏଯାକେ ଫଳି ନାଇଁ । ପୃଥିବୀରୁ ଯୁଦ୍ଧ ସବୁଦିନ ପାଇଁ ସରିଯାଇ ନାହିଁ; କିନ୍ତୁ ସେଦିନୁ ଆଜିଯାକେ ପରମାଣୁ ଶକ୍ତିର ଯେଉଁ ଶାନ୍ତିପୂର୍ଣ୍ଣ ପ୍ରୟୋଗ ବୈଜ୍ଞାନିକମାନେ କଲେଣି, ସେସବୁ ଦେଖି ମୋର ବହୁତ ଆଶା ଜେଗି ଯାଇଛି, ଆଉ ସ୍ୱର୍ଗରେ ଥାଇ ସୁଦ୍ଧା ମୁଁ ଭାବୁଛି ଯେ ମୋ ସ୍ୱପ୍ନ ସମ୍ପୂର୍ଣ୍ଣ ସଫଳ ହେବ ହିଁ ହେବ !



# ମୋ ନାଁ - 'ଡା ଭିନ୍‌ଚି'





"ଡା ଭିନ୍‌ଚି ! ହେ ଡା ଭିନ୍‌ଚି !" ଏମିତି ଯଦି ମତେ କିଏ ଡାକେ ମୋ ହାଡ଼ ଜଳିଯାଏ । ତଥାପି ଜଣେ ଜଣେ ଅଖାଡ଼ୁଆ ମତେ ଏମିତି ଏବେ ଏବେ ଡାକୁଛନ୍ତି । କହିଲ ଦେଖି ତମକୁ କିଏ ଯଦି ଏମିତି ଡାକିବ, "ହେ କଟକ", "ହେ ସମ୍ବଲପୁର", "ହେ ବ୍ରହ୍ମପୁର !" କଅଣ ଭଲ ଲାଗିବ ? କିନ୍ତୁ କଅଣ ଆଉ କରାଯିବ ? ଆମ ଘରଟା ହେଉଚି ଭିନ୍‌ଚି ସହରରେ । ସେଇଥିରୁ ମୋ ଅସଲ ନାଁ ଲିଓନାର୍ଡ଼ୋ ସାଙ୍ଗରେ ଏଇ ଜାଗା ନାଁଟି ଯୋଡ଼ି ଗୋଟିଏ ଲମ୍ବା ନାଁ ତିଆରି କରାଯାଉଥିଲା । ମୋର ଏଇ ନାଁଟାକୁ ବାପା ଇସ୍କୁଲରେ ଲେଖେଇ ଦେଇଥିଲେ—ଲିଓନାର୍ଡ଼ୋ ଡା ଭିନ୍‌ଚି । ତେବେ ମତେ ତୁମେ ଡାକିପାର 'ଲିଓ' । ଏମିତି ଡାକୁଥିଲେ ମୋ ମା । ସେ ମୋ ନିଜ ମା ନୁହଁନ୍ତି ମ । ମତେ

ପାଞ୍ଚ ବର୍ଷ ବେଳେ ସେ ପାଳିଲେ । ମୋ ନିଜ ମା କାଟେରିନା ଜଣେ ଚାଷୀ ଘରର ଝିଅ । ସେ ଅଳ୍ପ ବୟସରେ ମରିଗଲେ, ଛାଡ଼ ସେ କଥା ।

ମୋ ବାପାଙ୍କ ନାଁ ପିରେ । ନାଁଟା କହିଲି ମାନେ ମୋ ମୁଣ୍ଡ ନଇଁଯାଉଚି । ଖାଲି ଲୋକଦେଖାଣିଆରେ ନୁହେଁ, ସତରେ ମୁଁ ଖୁବ ଭଲପାଏ ତାଙ୍କୁ । ତାଙ୍କର ଯୋଗୁଁ ସିନା ମୁଁ ଆଜ ଏମିତି ଜଣେ ମଣିଷ ଯାହା ନାଁକୁ ଦୁନିଆର ପରମାଣୁ ବୋମା ବି ମାରିପାରିବ ନାହିଁ । ଆଜିକୁ ପାଞ୍ଚଶ ବର୍ଷରୁ ବେଶୀ ହେବ ମୋ ନାଁ ବଞ୍ଚିଚି । ପଚାରି ତ ଦେଖ ଜଣେ ଜାଣିବାଶୁଣିବା ଲୋକଙ୍କୁ ! ଚଟାପଟ ଉତ୍ତର ଯଦି ନ ମିଳିଚି—"ଓହୋ ! ଚିତ୍ରକର ଲିଓନାର୍ଡ଼ୋ ଡା ଭିନ୍‌ଚି ? ଆରେ ବାପ୍‌ରେ ବାପ୍ ! ତା'ର ଗୋଟିଏ ଛବିର ଦାମ୍ କୋଟି କୋଟି ଟଙ୍କା !"

ପ୍ରକୃତରେ ମୋର କେଇଟା ଛବି ଅଛି—ଖୁବ୍ ଚଢ଼ା ଦାମ୍ ହେଉଚି ଏଇଲେ ସେଗୁଡ଼ାକର ଆଜିକା ବଜାରରେ । ହେଲେ ପାଞ୍ଚଶ ବର୍ଷ ତଳେ ? ମାତ୍ର କେଇଟା ଟଙ୍କାକୁ ଜଣେ ଭଦ୍ରମହିଳାଙ୍କ ଛବି ଆଙ୍କିଥିଲି । ଓହୋ, କି କଷ୍ଟ ! ତିନିବର୍ଷ ଲାଗିଗଲା । ସେ ମହିଳାଙ୍କ ନାଁ ମାଡ଼ୋନ୍ନା ଲିସା । କୋଟିଏ ଟଙ୍କା ଦେଲେ ବି ସେ ଛବି ଏଇଲେ କିଣିବାକୁ ମିଳିବ ନାଇଁ । ହଉ ନ ମିଳୁ । ଏମିତି କାହିଁକି ଛୁଗୁଲେଇ କହୁଚି ତୁମେ ବୋଧେ ବୁଝିପାରୁନ ।

କଥାଟି ହେଲା—ମୁଁ ପ୍ରକୃତରେ ଖାଲି ଜଣେ ଚିତ୍ରକର ନୁହେଁ । ଏଇ କଥା ମୋ ବାପାଙ୍କୁ ଆମ ଗୁରୁ ମୂଳରୁ କହିଥିଲେ । ଆମ ଗୁରୁ ଅବଶ୍ୟ ନିଜେ ଜଣେ ଚିତ୍ରକର ଥିଲେ; କିନ୍ତୁ ତାଙ୍କର ଗୋଟିଏ ଛୋଟକାଟର କାରଖାନା ମଧ୍ୟ ଥିଲା । ସେଠି କଅଣ ଯେ କାମ ନ ହଉଥିଲା ! ଚିତ୍ର ଆଙ୍କିବା, ମୂର୍ତ୍ତି ଗଢ଼ିବାଠୁଁ କମାର କାମ, ବଣିଆ କାମ, ଯୁଦ୍ଧ ପାଇଁ ଅସ୍ତ୍ରଶସ୍ତ୍ର ତିଆରି କାମ, ପିଲାଙ୍କ ଖେଳନା ତିଆରି କାମ—ସବୁ ହଉଥିଲା । ସେଇ କାରଖାନାରେ ମୋ ଆଖି ଫିଟିଲା । ଦେଖିଲି, ଖାଲି ଚିତ୍ର ଆଙ୍କିଲେ କିଛି ହବ ନାହିଁ । ତା ସାଙ୍ଗକୁ ଦରକାର ଏମିତି କିଛି କାମ, ଯୋଉଥିରେ ଉପକାର ହବ ଲୋକଙ୍କର । ଏଇଥି-ଯୋଗୁ ମୁଁ ଘରେ ବସି ଆପଣା ମନକୁମନ କେତେଗୁଡ଼ିଏ ପାଠ ବହି ପଢ଼ିଗଲି । ଗଣିତ, ଗ୍ରହ ନକ୍ଷତ୍ରଙ୍କ ବିଜ୍ଞାନ, ଉଦ୍ଭିଦ ବିଦ୍ୟା, ପ୍ରାଣୀମାନଙ୍କର ଗଢ଼ବଢ଼, ଏମିତି କେତେ ପାଠ ଯାହା ସେକାଳ ଲୋକଙ୍କୁ ଜଣାଥିଲା । ହଁ, ତୁମେ ପଚାରିପାର—ଏ ପାଠପଢ଼ାରୁ ଲୋକଙ୍କର କି ବା ଉପକାର ହେଲା ? ଶୁଣ ଗୋଟିଏ କଥା !

ଦିନେ ବଜାରରେ ଜଣେ ଚଢ଼େଇବିକାଳିକୁ ଦେଖିଲି । ଶହ ଶହ ଚଢ଼େଇଙ୍କୁ ପଞ୍ଜୁରୀରେ ପୂରେଇ ବଦ୍‌ମାସଟା ବସିଥାଏ ଛକମୁଣ୍ଡରେ । ଚଢ଼େଇଗୁଡ଼ାକ କି କାଲୁବାଲୁ ହେଉଥାନ୍ତି । ବହୁତ ବେଳ ଧରି ମୁଁ ସେଇଠି ଠିଆହୋଇ ରହିଲି । ଚଢ଼େଇଗୁଡ଼ିକର ବିକଳ ଆଖି ମତେ ଯେମିତି କହୁଥାଏ—ରକ୍ଷାକର ! ରକ୍ଷାକର ! ମୋ ଛାତି ଫାଟିଗଲା ପରି ଲାଗିଲା । ଚଢ଼େଇଗୁଡ଼ିକୁ କେମିତି ରକ୍ଷା କରିବି ଏଇ ଭାବନାରେ ପଡ଼ିଗଲି । ସେଦିନ ମୋ ପାଖରେ ମାତ୍ର ଅଳ୍ପ କିଛି ଟଙ୍କା ଥିଲା । ସେତିକ ଟଙ୍କାରେ ମାତ୍ର ଗୋଟିଏ ଚଢ଼େଇ କିଣି ପାରିଥିଲି ମୁଁ । ଆଉ ଯେମିତି ପାଇଛି ତାକୁ ହାତରେ, ସେମିତି ପଞ୍ଜୁରୀଟି ଖୋଲିଦେଲି । ଫୁର୍‌ର୍‌କିନା ଉଡ଼ିଗଲା ମୋର ସେଇ ପ୍ରାଣପ୍ରିୟ ଚଢ଼େଇଟି ।

ଜାଅନ୍ତା ଚଢ଼େଇଟିଏ ପଞ୍ଜୁରୀରୁ ଖୋଲି ଉଡ଼େଇଦେବାରୁ କି ଆନନ୍ଦ ମିଳେ ଥରେ ପରୀକ୍ଷା କରି ଦେଖ । ସେଇ ଆନନ୍ଦ ଥରେ ନୁହେଁ, ଦିଥର ନୁହେଁ, ଶହ ଶହ ଥର ପାଇଛି



ମୁଁ । ଦିନ ପରେ ଦିନ ଚଢ଼େଇବାଲାଠୁଁ ଚଢ଼େଇ କିଣିଆଣି ସେଗୁଡ଼ିକୁ ଉଡ଼େଇ ଲାଗିଲି ମୁଁ । ମୋର ସେଇ କାଣ୍ଡକାରଖାନା ଦେଖିବାପାଇଁ ସହରରୁ ଅନେକ ଲୋକ ଆସି ରୁଣ୍ଡ ହୁଅନ୍ତି । ସମସ୍ତେ ମୋର ସେଇ କାମକୁ ଦେଖି ଖୁସି ହୁଅନ୍ତି ସତ; କିନ୍ତୁ ମୋ ଉଦ୍ଦେଶ୍ୟ କେହି,

ବୁଝିପାରୁ ନ ଥିଲେ । ସହରର କେତେଜଣ ମତେ ପାଗଳ ବୋଲି ମଧ୍ୟ ଡାକିଲେ । ମତେ ଚିଡ଼ିଲାଗିଲା ଖୁବ୍ । ତେଣୁ ମୋ ଜନ୍ମମାଟି ସେଇ ଭିନ୍‌ଚି ସହରଟି ଛାଡ଼ି ମୁଁ ଚାଲିଗଲି ଆମ ଇଟାଲୀ ଦେଶର ଅନ୍ୟ ଗୋଟିଏ ସହରକୁ ।

ଏ ସହରର ନାଁ ଫ୍ଲୋରେନ୍‌ସ । ସେଠୁଁ ଅଳ୍ପ ଦୂରରେ ପିସା ବୋଲି ଆଉ ଗୋଟିଏ ବଡ଼ ସହର । ଏ ଦୁଇଟିଯାକ ସହର ଆର୍ନୋ ନଦୀ କୂଳରେ । ଫ୍ଲୋରେନ୍‌ସ ନଦୀର ଉପର ମୁଣ୍ଡରେ, ପିସା ତଳ ମୁଣ୍ଡରେ । ଦିନେ ଫ୍ଲୋରେନ୍‌ସ ସହରବାଲାଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା ପିସା ସହରବାଲାଙ୍କ ସାଙ୍ଗରେ । ମୁଁ ତ ଥାଏ ଫ୍ଲୋରେନ୍‌ସରେ । ଯୁଦ୍ଧ ଲାଗିଲା ପରେ ଖୋଜା-ପଡ଼ିଲା ଜଣେ ଦକ୍ଷ ମିଲିଟାରୀ ଇଞ୍ଜିନିୟରର । ସେକାଳରେ ମିଲିଟାରୀ ଇଞ୍ଜିନିୟରମାନେ କଅଣ ବା ଜାଣିଥିଲେ ? ଖାଲି ତୋପ, କମାଣ, ଗୋଳା, ବାରୁଦ କେମିତି ତିଆରି ହବ ଏଇଆ । ଫ୍ଲୋରେନ୍‌ସ୍ ସହରବାଲା ଲୋକ ଖୋଜି ଖୋଜି ଆସି ଜୁଟିଲେ ଶେଷରେ ମୋରି ପାଖରେ । ସେତେବେଳେ ତ ମୁଁ ଛବି ଆଙ୍କୁଥିଲି ଆଉ ମସ୍ତ ମସ୍ତ ବଡ଼ ମୂର୍ତ୍ତି ଗଢ଼ୁଥିଲି । ଛବିଗୁଡ଼ାକରେ ବେଶୀ ଥିଲା ଯୋଦ୍ଧାମାନଙ୍କ ଛବି । ବିରାଟ ବିରାଟ ଯୁଦ୍ଧଘୋଡ଼ାଙ୍କ ଛବି କେତେ ନା କେତେ ଦୁର୍ଗ କାନ୍ଥରେ ଆଙ୍କିଚି ମୁଁ । ତା ଛଡ଼ା ମୂର୍ତ୍ତି ! ଥରେ ଜଣେ ରାଜାଙ୍କର ଗୋଟିଏ ବ୍ରୋଞ୍ଜ ପ୍ରତିକୃତି ତିଆରି କରିବା ପାଇଁ ବରାଦ ଥିଲା । ପହିଲେ ମାଟି ଛାଞ୍ଚର କାମଟି ସରିଯାଇଥିଲା । ଯାର ଉଚ୍ଚତା ଥିଲା ପଚିଶ ଫୁଟ । ବ୍ରୋଞ୍ଜ ଢଳା ହେଲା ପରେ ମୂର୍ତ୍ତିର ଓଜନ ହୋଇଥାନ୍ତା ପଚିଶ ଟନ୍ । ଏତେ ବଡ଼ ବଡ଼ ମୂର୍ତ୍ତିକୁ ଟେକାଟେକି ଉଠାରଖା କରିବା କାଠିକର ପାଠ । ଏଇଥିପାଇଁ ଯନ୍ତ୍ରପାତି ଦରକାର । ଯେମିତି ଆଜିକାଲି ଚକାଟିଏ ବଦଳାଇବା ପାଇଁ ମଟର ଗାଡ଼ିକୁ ତୁମେ ଜାକ୍ ଦ୍ୱାରା ଟେକିଦଉଚ, ସେମିତି ଗୋଟିଏ ଯନ୍ତ୍ର ମୁଁ ସେକାଳରେ ପହିଲେ ତିଆରି କରିଥିଲି । ଏମିତି ଆହୁରି କେତେ କଳକବ୍‌ଜା ମୁଁ ଉଦ୍‌ଭାବନ କରିଚି । ସେଇଥିପାଇଁ ଫ୍ଲୋରେନ୍‌ସ୍ ସହରବାଲା ମତେ ଧଇଲେ । ତାଙ୍କ ପକ୍ଷରୁ ମିଲିଟାରୀ ଇଞ୍ଜିନିୟର ହେଲି ମୁଁ ।

ଆଗରୁ କହୁଚି ନା—ଯୁଦ୍ଧ ପାଇଁ ଦରକାର ବଡ଼ ବଡ଼ ତୋପ, କମାଣ, ଗୋଳା, ବାରୁଦ । ମୁଁ ମିଲିଟାରୀ ଇଞ୍ଜିନିୟର ହେଲା ପରେ ଫ୍ଲୋରେନ୍‌ସବାଲାଙ୍କୁ କହିଲି, "ତୋପ କମାଣ କିଛି ଲୋଡ଼ା ନାହିଁ । ଗୋଟାଏ କାମ କରିବା । ଏ ଯୋଉ ଆର୍ନୋ ନଦୀ ବହି ଯାଉଛି, ମନେକର, ମୁଁ ତାକୁ ବନ୍ଧେଇ ଦେଲି । ତା'ପରେ କଅଣ ହବ କହିଲ ?"

ସେ କାଳରେ ନଦୀ ବନ୍ଧ କଥା କିଏ ବା ଭାବୁଥିଲା ? ଫ୍ଲରେନ୍ସ୍‌ବାଲା ମତେ ସନ୍ଦେହ କଲେ । ଭାବିଲେ, ମୁଁ ସତେ ପାଗଳଟାଏ । ଭିନ୍‌ଚି ସହରର ଲୋକେ ମତେ ପାଗଳା ଡାକନ୍ତି— ଫ୍ଲରେନ୍ସ୍‌ବାଲାଙ୍କୁ ଅଛପା ନ ଥିଲା । କିନ୍ତୁ ଯାହାହେଉ ସେମାନେ ମୋ କଥା ଶେଷରେ ଶୁଣିଲେ ।

ଆର୍ନୋ ନଦୀରେ ବନ୍ଧଟିଏ ପକେଇଦେଲି । ବନ୍ଧ ଆରପଟେ ପିସା ସହର ଆଡ଼କୁ ଯେମିତି ଟୋପାଏ ପାଣି ନ ଯିବ ସେଇ ବନ୍ଦ କରିଦେଲି । ଆମର ଏପଟେ ନଦୀବନ୍ଧଠାରୁ ସମୁଦ୍ରଯାକେ କେନାଲ୍ ସବୁ ଖୋଳିଦେଲି । କେନାଲ୍ ପାଣିରେ ଶୁଖିବିଲ୍ ସବୁ ଶସ୍ୟ-ଶ୍ୟାମଳ ହୋଇଉଠିଲା । କିନ୍ତୁ ସେପଟେ ! ଆହା ବିଚରା ପିସା ସହରର ଲୋକଗୁଡ଼ିକ ପାଣିବିନା କି କଷ୍ଟ ନ ପାଇଲେ ! ଯାହାହେଉ, ଦି ସହର ଭିତରେ ଯୁଦ୍ଧ ସେଇଠି ଥମ୍ । ତା'ପରେ ଦୁଇଟିଯାକ ସହରକୁ ବଡ଼ିଆ କେନାଲ୍ କେତୋଟି ଦ୍ୱାରା ମୁଁ ଯୋଡ଼ିଦେଲି । ପିସା ସହର ବି ପାଣି ପାଇଗଲା । କିନ୍ତୁ ମୁଁ !

ପରେ ପରେ ଫ୍ଲରେନ୍ସ୍ ଛାଡ଼ି ମୁଁ ବାହାରି ଆସିଲି ଆଉ ଗୋଟିଏ ସହରକୁ ।

ଏ ସହରଟି ନା ମିଲାନ୍ । ଫ୍ଲରେନ୍ସ୍‌ଠାରୁ ଖୁବ୍ ବଡ଼ ଏ ସହର । ଏଠିକା ରଜାଙ୍କୁ ମୁଁ ଦେଖାକଲି । ତାଙ୍କୁ କହିଲି, "ଏ ସହରଟିକୁ ଖୁବ୍ ସୁନ୍ଦର କରିଦେବି, ମତେ ମିଲିଟାରୀ ଇଞ୍ଜିନିୟର କରିବେ ?" ମିଲାନ୍‌ର ରାଜା ମୋର ଚିତ୍ରକଳାର ଖ୍ୟାତି ଶୁଣିଥିଲେ ଆଉ ଫ୍ଲରେନ୍ସ୍‌ରେ ଆର୍ନୋ ନଦୀରେ ବନ୍ଧ ପକେଇବା କଥା ବି ଶୁଣିଥିଲେ । ନଦୀବନ୍ଧ ଗୋଟାଏ ଖାସା କାମ ନୁହେଁ ବୋଲି ସେ ବୋଧହୁଏ ଭାବିଥିଲେ । ତେଣୁ ସେ କହିଲେ, "ଲିଓନାର୍ଡୋ ! ତମେ ଜଣେ ଚିତ୍ରକର । ବେଶ୍ ଭଲ ଆଙ୍କିପାର ମୁଁ ଶୁଣିଛି । ତୁମକୁ ମୁଁ ସେଇ ଚିତ୍ରକର ପଦରେ ନିଯୁକ୍ତ କଲି । ଇଞ୍ଜିନିୟର ହବାକଥା ଭୁଲିଯାଅ ।"

ମିଲିଟାରୀ ଇଞ୍ଜିନିୟର ପଦଟି ଗୋଟାଏ ତୁଚ୍ଛ ଲୋକକୁ ରଜା ଦେଇଦେଲେ । ମୁଁ ଚିତ୍ରକର ହୋଇ ରହିଲି । ୧୪୮୪-୮୫ ଖ୍ରୀଷ୍ଟାବ୍ଦ ସେ । କି ଭୀଷଣ ବର୍ଷ ହଇଟା । ମିଲାନ୍‌ରେ ମହାମାରୀ ପ୍ଲେଗ୍‌ରୋଗର ମଡ଼କ ଚଢ଼ିଗଲା । ନିତି ହଜାର ହଜାର ଲୋକ ମଲେ । ତାଆରି ଭିତରେ ମତେ ଛବି ଆଙ୍କିବାକୁ ପଡ଼ୁଥାଏ । ଛବି ଅଙ୍କା ଭିତରେ ମୁଁ ଦିନେ ଦିନେ ରଜାଙ୍କ ଦରବାରକୁ ଯାଉଥାଏ ଆଉ ଅନୁରୋଧ କରୁଥାଏ, "ଦେଖନ୍ତୁ, ସହରଟିର

ସ୍ୱାସ୍ଥ୍ୟ କ ସଙ୍କୀର୍ଣ୍ଣ । ଗୋଟିଏ ହେଲେ ନଳାନର୍ଦ୍ଦମା ନାହିଁ । କି ଅପରିଷ୍କାର ! ପ୍ଲେଗ୍‌ରୋଗ କମାରୁ ଭଲ ହବ ନାହିଁ ଯଦି ଏ ସବୁର ପରିବର୍ତ୍ତନ ନ କରିବ ।"

ସେତେବେଳେ ମିଲାନ୍ ସହରର ଉନ୍ନତି ପାଇଁ ଗୋଟିଏ ନକ୍‌ସା କରିଥିଲି ମୁଁ । ସେଥିରେ ଥିଲା—ଚଉଡ଼ା ରାସ୍ତା, ମାଟିତଳେ ନର୍ଦ୍ଦମାପାଣି ବୋହିଯିବା ପାଇଁ ସୁନ୍ଦର ପରିକଳ୍ପନାଟିଏ । ତା'ଛଡ଼ା ଥିଲା ସେଥିରେ ଯାନବାହନର ସୁବିଧା ଲାଗି ନୂଆ ଧରଣର କେନାଲ୍ ବ୍ୟବସ୍ଥା । ମିଲାନ୍‌ର ରାଜା ସ୍ଫୋର୍ ଉପ୍ସ୍ତରେ ମୋ ନକ୍‌ସାକୁ ଦେଖି ରାଜି ହୋଇଗଲେ ଆଉ ଶୀଘ୍ର କାମ ଆରମ୍ଭ କରିଦେବେ ବୋଲି ଜବାବ୍ ଦେଲେ । କିନ୍ତୁ ପ୍ଲେଗ୍ ରୋଗର ଦାଉ ଟିକିଏ ଯେମିତି କମିଗଲା ଆଉ ଶୁଣିଲେ ନାହିଁ ମୋ କଥା । ମୋ ନକ୍‌ସା ସେଇ ନକ୍‌ସାରେ ହିଁ ରହିଗଲା ।

ସେ ଯାହାହେଉ, ମୋ ଚିତ୍ର ଆଙ୍କିବା କାମ ବନ୍ଦ ନ ଥାଏ । ସେତିକିବେଳେ ମୋନାଲିସା ପରି ପୃଥିବୀବିଖ୍ୟାତ ଆଉ ଗୋଟିଏ ଛବି ମୁଁ ଆଙ୍କିଥିଲି । ସେ ଛବିର ନାଁ "ଶେଷ-ଆହାର ।" ଯୀଶୁଖ୍ରୀଷ୍ଟ ମୃତ୍ୟୁ ପୂର୍ବରୁ ନିଜ ଶିଷ୍ୟମାନଙ୍କ ଗହଣରେ ଯେମିତି ବସି ସନ୍ଧ୍ୟାରେ ଶେଷଥର ପାଇଁ ଆହାର କରିଥିଲେ, ମୋ ଚିତ୍ରଟି ଥିଲା ତାଆରି ଦୃଶ୍ୟ । ଏଇ ଛବିଟି ଯୋଗୁଁ ମିଲାନ୍‌ରାଜାଙ୍କଠୁଁ ଅବଶ୍ୟ ମତେ ବେଶୀ କିଛି ମିଳିଲା ନାହିଁ । ତେବେ ଏ ଛବିଟି ଯୋଗୁଁ ମତେ ଜଣେ ବଢ଼ିଆ ସାଙ୍ଗ ମିଳିଗଲା । ମୋର ଏଇ ସାଙ୍ଗଟିର ନାଁ ପାସିଓଲି । ସେ ତ ଜଣେ ଧର୍ମପ୍ରଚାରକ ଥିଲେ, କିନ୍ତୁ ଗଣିତରେ ବି ଥିଲେ ଓସ୍ତାଦ୍ । ତାଙ୍କଠୁଁ ଗଣିତ ବିଦ୍ୟାଟି ହାସଲ କରିନେଲି ମୁଁ ।

ଏଇ ପାସିଓଲିଙ୍କ ଗଣିତରୁ ମୁଁ ଆଉ ଗୋଟିଏ ମିଲିଟାରି ଇଞ୍ଜିନିୟରିଂ କଥା ବାହାର କଲି । ସେତେବେଳକୁ ଆମେ ମିଲାନ୍ ଛାଡ଼ି ଗଲୁଣି ଭେନିସ୍‌କୁ । ଏଇଠି ମୁଁ ଗୋଟିଏ ବୁଡ଼ାଳି ପୋଷାକ ଆଉ ପାଣିତଳେ ନିଃଶ୍ୱାସ ମାରିବା ପାଇଁ ଗୋଟିଏ ବାୟୁ-ପ୍ରକୋଷ୍ଠ ତିଆରି ପଦ୍ଧତି ଉଦ୍ଭାବନ କଲି । ଏଇ ପୋଷାକ ପିନ୍ଧି ଆଉ ଏଇ ବାୟୁ-ପ୍ରକୋଷ୍ଠରେ ଥାଇ ଜଣେ ଲୋକ ବେଶ୍ ଖୁସିରେ ସମୁଦ୍ରର ପାଣି ତଳେ ତଳେ ଅନେକ ବାଟ ଚାଲିଯିବ । ଆଉ ତା'ପରେ, ଯୁଦ୍ଧ ଜାହାଜ ତଳେ କଣା କରିବାକୁ କେତେବେଳ ! କଥାଟି ପ୍ରଘଟ ହେବାମାତ୍ରେ ଦେଖ ଭିଡ଼ ମୋ ଘର ଆଗରେ । ଅନେକ ରଜା ଲୋକ ପଠେଇଲେ ମୋଠୁଁ ସେଇ କୌଶଳଟି ହାସଲ କରିବାପାଇଁ । ପ୍ରଚୁର

ଧନଲୋଭ ଦେଖେଇଲେ ସେମାନେ । କିନ୍ତୁ ମୁଁ କଅଣ ଭାବିଲି ଜାଣ ? ମୋର ମନେ ହେଲା ମଣିଷଗୁଡ଼ାକ ଭାରି ମୂର୍ଖ, ନିର୍ଦ୍ଦୟ । ମୋର ବିଦ୍ୟା ନେଇ ଆଜି ଏମାନେ ମାଟି ଉପରେ ହାଣକାଟ ହେଉଛନ୍ତି । କାଲି ସମୁଦ୍ର ଗର୍ଭରେ ମଧ୍ୟ ସେଇ ହତ୍ୟାକାଣ୍ଡ ସବୁ ଘଟିବ । କାଗଜଗୁଡ଼ିକୁ ବାନ୍ଧିବାନ୍ଧି ଥୋଇଦେଲି ।

କିନ୍ତୁ ମଣିଷର ଉପକାର ପାଇଁ ମୁଁ ବିଜ୍ଞାନକୁ ତଥାପି ହାତରୁ ଛାଡ଼ି ଦେଲି ନାହିଁ । ଇଟାଲିର ସହର ସହର ବୁଲି ମୁଁ ରଜାମାନଙ୍କୁ ନଗର ନିର୍ମାଣ ଆଉ ନଦୀ ବନ୍ଧ ଯୋଜନା



ଦେଲି । କିନ୍ତୁ ସେମାନଙ୍କର ସେଇ ଗୋଟିଏ ବରାଦ—ଛବି ଆଙ୍କ । ଛବି ଆଙ୍କିବାରେ ମୋର ଆପତ୍ତି ନ ଥିଲା । କିନ୍ତୁ ଛବିକୁ ଜୀବନ୍ୟାସ ଦେବାକୁ ଚାହୁଁଥିଲି ମୁଁ । ସେଥିପାଇଁ ଦରକାର ପ୍ରଚୁର ଧନ ଆଉ ପ୍ରଚୁର ସାହସ । ଏ ରଜାମାନେ ସେଥିପାଇଁ ପ୍ରସ୍ତୁତ ନ ଥିଲେ ।

ଏଇ ଅଳ୍ପଦିନ ତଳେ ମୋର କେତେଗୁଡ଼ିଏ ବୈଜ୍ଞାନିକ ନକ୍ସା ଯୋଉଗୁଡ଼ିକୁ ବଡ଼ା ବାନ୍ଧି ଥୋଇଦେଇଥିଲି ଜଣେ କେହି ଖୋଳତାଡ଼ି କରି ପାଇଛନ୍ତି । ଭାବି ଦେଖ, ପାଞ୍ଚଶହରୁ ବେଶୀ ବର୍ଷ ତଳର କାଗଜ ସେଗୁଡ଼ିକ । ସେଥିରେ ପଢ଼ିଲି ପଢ଼ିଲି ତୁମେ ଦେଖିବ କ'ଣ ଜାଣ ? ଖାଲି କେତେଗୁଡ଼ିଏ ଉଡ଼ନ୍ତା ଚଢ଼େଇଙ୍କ ନକ୍ସା । ଏଇ ନକ୍ସା-ଗୁଡ଼ିକ ମୋର ସେଇ ପିଲାଦିନର—ଯେବେ ମୁଁ ଚଢ଼େଇବାଲାଠୁଁ ପଞ୍ଜୁରିରେ ପଶିଥିବା ଚଢ଼େଇଗୁଡ଼ିକୁ କିଣୁଥିଲି ଆଉ ଫୁର୍‌ରକିନା ଉଡ଼େଇ ଦଉଥିଲି, ଆଉ ଯୋଉଥିପାଇଁ ଲୋକ ମତେ କହୁଥିଲେ ପାଗଳ ।

ଚଢ଼େଇଙ୍କର ଉଡ଼ିବା ସାଙ୍ଗରେ ମଣିଷ ମନର କିଅଣ ଏତେ ସମ୍ପର୍କ ସତେ ! ସେଦିନ ଆମବେଳର ଲୋକେ କଥାଟାକୁ ଜମାରୁ ବୁଝି ପାରୁ ନ ଥିଲେ । କିନ୍ତୁ ଆଜି ଯେଉଁମାନେ ଉଡ଼ାଜାହାଜରେ ବସି ଯାଉଛନ୍ତି—ପଚାର ତାଙ୍କୁ । ସେମାନେ କହିବେ—ଚଢ଼େଇ ଭଳି ଉଡ଼ି ପାରୁଥିବା ମଣିଷଙ୍କୁ ଯଦି ଜେଲ୍‌ରେ ପୂରେଇ ବନ୍ଦ୍ କରିଦିଆଯାଏ, ସେଇ ମଣିଷମାନଙ୍କୁ ମୁକ୍ତ ଦବାପାଇଁ ବାଟ ମୁଁ ସେକାଳୁ ଦେଖିଥିଲି । ଉଡ଼ାଜାହାଜର ଅନେକ ନକ୍ସା କରିଥିଲି ମୁଁ ।

କିନ୍ତୁ ଆମବେଳେ ପେଟ୍ରୋଲ୍ କେମିତିକା ଜିନିଷ କେହି ଦେଖି ନ ଥିଲୁ । ଯଦି ପେଟ୍ରୋଲ୍ ଥାଆନ୍ତା ତେବେ କେଉଁକାଳୁ ମୁଁ ମଣିଷକୁ ଆକାଶରେ ଉଡ଼େଇ ଦେଇଥାନ୍ତି ।

